# କିଶୋରଚନ୍ଦ୍ରାନନ୍ଦ ଚମ୍ପୂ
# ନାଟକ

ପରିବର୍ତ୍ତିତ ଓ ପରିବର୍ଦ୍ଧିତ

ଦ୍ୱିତୀୟ ସଂସ୍କରଣ

୧୯୪୦

ପ୍ରଣେତା :—

କବିଚନ୍ଦ୍ର

ଶ୍ରୀ କାଳୀଚରଣ ପଟ୍ଟନାୟକ

ମୂଲ୍ୟ ଛଅ ଅଣା ମାତ୍ର

## ନାଟ୍ୟକାରଙ୍କ ପ୍ରଣୀତ :—

| | |
|---|---|
| ହରିଶ୍ଚନ୍ଦ୍ର ନାଟକ | ଟ ୦ ୳୵ |
| ଶକୁନ୍ତଳା ନାଟକ | ଟ ୦ ୳୶ |
| ମୃଗୟା ନାଟକ | ଟ ୦ ୳୵ |
| ଧ୍ରୁବ ନାଟକ | ଟ ୦ ।୵ |
| କୌତୁକ ଚିନ୍ତାମଣି ନାଟକ | ଟ ୦ ।୵ |
| ବିଦ୍ୟାବଳୀ ନାଟକ | ଟ ୦ ।୵ |
| ବାଂଶୀବିଳାସ ନାଟକ | ଟ ୦ ।୵ |
| ଶ୍ରୀ ଗୀତଗୋବିନ୍ଦ ନାଟକ | ଟ ୦ ୳ |
| ଜୀବିତ ତର୍ପଣ (ପ୍ରହସନ) | ଟ ୦ ୵ |
| ପୋଷ୍ୟପୁତ୍ର (ପ୍ରହସନ) | ଟ ୦ ୵ |
| ପିଲାଙ୍କ ସଙ୍ଗୀତଶିକ୍ଷା (ପ୍ରଥମଭାଗ) | ଟ ୦ ।୵ |
| ସଙ୍ଗୀତ ଓ ହାର୍ମୋନିୟମ୍ ଶିକ୍ଷା ,, | ଟ ୧ ୮ |
| କାଳୀବାବୁଙ୍କ ଗୀତ ମଞ୍ଜରୀ | ଟ ୦ । |
| କିଶୋରୀଚନ୍ଦ୍ରର ସା, ରେ, ଗା, ମା (ରାଗ, ଲକ୍ଷଣ, ସ୍ୱରଲିପି ଓ ବିଶଦ ଅର୍ଥ ସହିତ) | (ଯନ୍ତ୍ରସ୍ଥ) |
| ତାଳତରଙ୍ଗ (ହିନ୍ଦୁସ୍ଥାନୀ ଓ ଓଡ଼ିଶୀ ତାଳମାନଙ୍କର ଲକ୍ଷଣ ଓ ବିବିଧ ପ୍ରକାରର ଉତ୍କୃଷ୍ଟ, ତିହାଇ ଓ ପରଣ ଇତ୍ୟାଦି ସମ୍ବଳିତ ଏକମାତ୍ର ତାଳ-ସମ୍ବନ୍ଧୀୟ ପୁସ୍ତକ) | (ଯନ୍ତ୍ରସ୍ଥ) |

# ଭୂମିକା

କବିସୂର୍ଯ୍ୟଙ୍କର କିଶୋରଚନ୍ଦ୍ରାନନ୍ଦ ଚମ୍ପୂ ବା କିଶୋରୀ-ଚମ୍ପୂ ଆମ ଓଡ଼ିଆ ଘରର ଏକ ଅମୂଲ୍ୟ ରତ୍ନ; ଏକଥା ସମସ୍ତେ ଏକମୁଖରେ ସ୍ୱୀକାର କରିବେ। କବିସୂର୍ଯ୍ୟଙ୍କ କାଳ ଅଧିକ ନାହିଁ। ତାଙ୍କ ସଙ୍ଗୀତର ଭାଷା ବୁଝିବାର ବା ଭାବ ଗ୍ରହଣ କରିବାର ଶକ୍ତି ତାଙ୍କ କାଳ ତୁଳନାରେ ଅତି ଅଳ୍ପସଂଖ୍ୟକ ଲୋକଙ୍କର ଅଛି। ସେ ସଙ୍ଗୀତ-ମୁଖର ସ୍ୱର୍ଣ୍ଣଯୁଗର ସୂର୍ଯ୍ୟ ଅତି ହୀନପ୍ରଭ। ଚମ୍ପୂ ଗୀତର ଆଦର ମଝିରେ କିଛିକାଳ ଆମ ଦେଶରେ ଊଣା ହୋଇଥିଲା। ଗୀତ ଗୁଡ଼ିକର ଅର୍ଥ ବୁଝିବା କଠିନ ହୋଇଥିଲା। ଦେଖିଛି ୧୯୩୨ ସାଲ ପୂର୍ବରୁ ସାଧାରଣ ଲୋକେ ଏ ଗୀତର ଯାହା ଅର୍ଥ ବୁଝୁଥିଲେ ବର୍ତ୍ତମାନ ତାହାଠାରୁ ଢେର ବେଶୀ ବୁଝନ୍ତି, ଚମ୍ପୂ ଗୀତର ଯାହା ଆଦର ଥିଲା ତାଠାରୁ ଅନେକ ଗୁଣରେ ଆଦର ମଧ୍ୟ ବଢ଼ିଯାଇଛି। ଏହାର ପ୍ରଧାନ କାରଣ କେବଳ ପ୍ରଚ୍ଛର ବୋଲି କହିଲେ ଆଦୌ ଅତ୍ୟୁକ୍ତି ହେବନାହିଁ। ଯେଉଁ ଇଚ୍ଛାରେ ମୁଁ ଚମ୍ପୂ ଗୀତଗୁଡ଼ିକୁ ନାଟକ ମଧ୍ୟରେ ଖଞ୍ଜି ୧୯୩୨ ସାଲରେ ପ୍ରଥମେ କଟକରେ ମୋର ନାଟ୍ୟସଙ୍ଘଙ୍କ ଦ୍ୱାରା ଅଭିନୀତ କରାଏଁ, ତାହା ଅତି ସଫଳ ହୋଇଛି। ଭାବୁକ, ସାହିତ୍ୟିକ, ସଙ୍ଗୀତଜ୍ଞ ଓ ସଙ୍ଗୀତ-ପ୍ରେମୀ ମାନେ ଟିକିଏ ସୂକ୍ଷ୍ମ ଦୃଷ୍ଟିରେ ବିଚାର କଲେ ମୋ କଥାର ସତ୍ୟତା ଉପଲବ୍ଧି କରି ପାରିବେ। ନାଟ୍ୟକାର ହିସାବରେ ମୋର କର୍ତ୍ତବ୍ୟ ମୁଁ କରୁଛି, କରିବି। ଏଥିଲାଗି ନିନ୍ଦା ବା ସ୍ତୁତି ବା ଗର୍ବ ଗୌରବର ମୁଁ ଅପେକ୍ଷା ରଖିନାହିଁ; ରଖୁନାହିଁ।

କିଛୁକାଳ ପୂର୍ବେ ମୋର ପ୍ରଣୀତ ସେହି ଚମ୍ପୂ ନାଟକର ଅଭିନୟ ଦେବା ପରେ ମୋର ହିତୈଷୀ ଦଳେ ନାଟକ ଗଠଣର କଥାବସ୍ତୁ (Plot) ବଦଳାଇବା ବିହିତ ମନେହେଲା ଏବଂ ଏ ପରିବର୍ତ୍ତନ ମୁଁ କରି ସାରିଅଛି । ତଦନୁସାରେ ୧୯୩୪ ସାଲଠାରୁ ଅବଧି ମୋର ସେହି ପରିବର୍ତ୍ତିତ ଚମ୍ପୂ ନାଟକର ଅଭିନୟ ପ୍ରଦର୍ଶିତ ହେଉଅଛି । ତାହାହିଁ ବର୍ତ୍ତମାନ ପ୍ରକାଶିତ ହେଲା । କାହିଁକି ପରିବର୍ତ୍ତନ କଲି, ସେ କଥା ମୋର ପୂର୍ବପ୍ରକାଶିତ ଚମ୍ପୂନାଟକ ଓ ଏହି ଅଭିନବ ପ୍ରକାଶ ଖଣ୍ଡି ପଢ଼ି, ଚମ୍ପୂ ଗୀତର ବିଷୟ ଅନୁଧାବନ କଲେ ସାହିତ୍ୟ-ରସିକମାନେ ବୁଝିପାରିବେ ।

ରଙ୍ଗମଞ୍ଚ ଯେ ସଙ୍ଗୀତ ସାହିତ୍ୟର ବାସ୍ତବ ଉନ୍ନତିର ପନ୍ଥା, ଏ କଥାର ମୁଁ ଫଳତଃ ଅନୁଭବ କରି ଆତ୍ମ ତୃପ୍ତିଲାଭ କରିପାରୁଛି । ଏହାହିଁ ମୋର କବିସୂର୍ଯ୍ୟଙ୍କ ଚରଣ ସେବାର ମୂଲ୍ୟ ।

ମୋର ଆଶା ଯେ ଏ ପୁସ୍ତକଟି ହାତରେ ପାଇ ସଙ୍ଗୀତ-ସାହିତ୍ୟ-ରସିକମାନେ ପୂର୍ବଭଳି ମୋତେ ସ୍ନେହ ଦୃଷ୍ଟିରେ ଦେଖି ଉତ୍ସାହିତ କରିବେ ।

ବିନୀତ

—ଲେଖକ—

# ଅର୍ପଣ

ପରମ ସମ୍ମାନାସ୍ପଦ ଗୁଣଗ୍ରାହକ

ଶ୍ରୀଶ୍ରୀଶ୍ରୀ ମଞ୍ଜୁଷାଧୀଶ୍ୱର ମହୋଦୟ—

ମହାମାନ୍ୟବରେଷୁ

ଶ୍ରୀମନ୍,

ବଂଶପାରମ୍ପରିକ ଉଜ୍ଜ୍ୱଳ ସଙ୍ଗୀତ ସାହିତ୍ୟ-ପ୍ରୀତିର ନିଦର୍ଶନ ସ୍ୱରୂପ ଶ୍ରୀମନ୍ ସ୍ୱତଃ ପ୍ରବୃତ୍ତ-ହୋଇ ବନ୍ଧୁ ନାଟକର ଏହି ସଂସ୍କରଣଟିକୁ ପ୍ରକାଶର ସୁଯୋଗ ଦେଇଛନ୍ତି ।

ରତ୍ନାକରୋନ୍ମୁଖ ସମୁଦ୍ରରେ ରତ୍ନପୂଜା କଲାଭଳି ମୁଁ ଆଜି ଶ୍ରୀମନ୍ତଙ୍କର ସୌଜନ୍ୟପରିପୁଷ୍ଟ ଭେଟିଟିକୁ ନେଇ, ଶ୍ରୀମନ୍ତରେ ଉପସ୍ଥିତ ।

ସାଦରେ ଗୃହୀତ ହେଲେ ଶ୍ରମ ସାର୍ଥକ ମଣିବି ।

ଭବାମ୍ବାଗଡ଼
ତା ୧୩।୮।୪୦
( ସୁନି. ଅଁ )

ବିନୀତ
ଶ୍ରୀ କାଳୀଚରଣ ପଟ୍ଟନାୟକ ।

# ପ୍ରସ୍ତାବନା

ବୃନ୍ଦାବନର ନିକୁଞ୍ଜ ଦୋଳା । କାଳ-ବସନ୍ତ । ଶୁକ୍ଳାରଜନୀ । ବନ, ଲତା ଫୁଲ ଭାରରେ ଅବନତ । କୁଞ୍ଜ ଦୋଳରେ ଶ୍ରୀକୃଷ୍ଣ-ଶ୍ରୀଚରଣରେ ଶ୍ରୀମତୀ ଏକା ଅର୍ଘ୍ୟ ଚନ୍ଦାପନା କରୁଥିଲେ । ସଖୀମାନେ ପ୍ରେମୋନ୍ମତ୍ତା । ସେମାନଙ୍କ ନୃତ୍ୟ ଗୀତରେ କୁଞ୍ଜବନ ଉଚ୍ଛୁଳି ଉଠୁଥିଲା । ସେମାନେ ଗାଉଥିଲେ :—

ଗୀତ

ମଞ୍ଜୁଳ ବନ ସାଜେ
କୋକିଳ କୁହୁ, ଝଙ୍କାରେ ଭୃଙ୍ଗ
ଝରଣା ପବନେ ବାଜେ ।

ମଳୟ ମଧୁ ମଧୁରେ ବହେ,
କୁସୁମ ଗନ୍ଧ ଚୁରାଇ ନିଏ,
ସାଗରେ, ନଗରେ, ଭୂଧରେ
ନଧର ଅଧରେ ମଧୁରେ ସଜେ ।

# ପରୀଚୟ

ଶ୍ରୀକୃଷ୍ଣ—ନର ଦେହଧାରୀ ନାରାୟଣ

ଶ୍ରୀମତୀ—ନାରୀରୂପିଣୀ ଲକ୍ଷ୍ମୀ ।

| | |
|---|---|
| ମଧୁମଙ୍ଗଳ-ଶ୍ରୀକୃଷ୍ଣଙ୍କ ପ୍ରିୟସଖା | ଲଳିତା, ବିଶାଖା } ଶ୍ରୀମତୀଙ୍କର ପ୍ରିୟ ସହଚରୀଦ୍ୱୟ |
| ସୁବଳ, ଶ୍ରୀଦାମ } ବ୍ରଜ ରାଖାଳକ— ଶ୍ରୀକୃଷ୍ଣଙ୍କ ଗୋଷ୍ଠ-ଲୀଳା ସାଥୀ | ବୃନ୍ଦା, କୁନ୍ଦଲତା } ସଖୀମାନେ |
| ଇତ୍ୟାଦି | ଇତ୍ୟାଦି |

ବସନ୍ତ—କାମଦେବ । ରତି—କାମ-ପତ୍ନୀ ।



# କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ




## ପ୍ରଥମ ଅଙ୍କ

### ପ୍ରଥମ ଦୃଶ୍ୟ

—ବ୍ରଜପଥ—

[ ଅନତି ଦୂରରେ ବୃଷଭାନୁ ପୁର ଦଶୁଥାଏ । ବ୍ରଜ ବାଳକ-ମାନେ ପୂର୍ବରୁ ଗୋଧନ ନେଇ ଆସୁଥିଲେ, ଗାଉଥିଲେ ଓ ନାଚୁଥିଲେ । —ପଛେ ପଛେ ଶ୍ରୀକୃଷ୍ଣ—]

ନେଳୀ ମେଘେ ଏ କି ଛବ ପଡେ
ଅଧା ଫଳା ଅଧାନାଳିଆ, ବୋଲି ଦେଇ କିଏ ଯେମତେ !
ମେଘ ତଳେ ଛପି ଛପିକା
ନୂଆ ବୋହୂ ସିନ୍ଦୁର ଟିକା
ପଣ୍ଡୁବଙ୍ଗୀ ଶାଢୀଟି ପିନ୍ଧ, ଆଖି କୋଣେ ଗୁହଁଲା ମୋତେ । ୧ ।
ନାଲି ଓଠ ହସଟି ତାର,
ସତେ ଏକା ଭାରି ସୁନ୍ଦର,
ଛୁଇ ଦେଲା ମେଘଟି ଯାଇ, ଶ୍ରୈଖାରଙ୍ଗ ଅମ୍ବର କେତେ ।୨।
ସଜ୍ଜଳିଆ ନୂଆ ବୋହୂଟି
ରଙ୍ଗ ଥାଉଁ ସାରେ ପାଇଟି
ଆପେ ଉଠି ସଭିଙ୍କି ଡ଼ାକେ କାଉଠାରୁ କୋଇଲି, ଯେତେ ।୩।

(ସବୁଠୁ ପଛେ ଶ୍ରୀକୃଷ୍ଣ ଆସୁଥିଲେ—ଦୋଳାଭିଡ଼ପରେ ଶ୍ରୀମତୀ ଚାଲି ଯାଉଥିଲେ। ହଠାତ୍ ଆଖି ପଡ଼ିଗଲା କୃଷ୍ଣଙ୍କର ତାଙ୍କ ଉପରେ—ଅଟକି ଗଲେ। ଦେଖ ଯେମିତି କଣ ଗୋଟାଏ ଝୁଣ୍ଟିଲେ—ସେଇଭଳି ଉପରକୁ ଚାହିଁ ଚାହିଁ ଅଟକି ଗଲେ। ସଖୀମାନେ ଘୁଞ୍ଚି ଚାଲି ଗଲେଣି—ତେଣିକି ଯମା ନଜର ନାହିଁ ମଧୁମଙ୍ଗଳ ଟିକିଏ ଦୂରରେ ଛେନା ଖଣ୍ଡେ ଖାଇ ଖାଇ ଆସୁଥିଲେ। ନଜର ନାହିଁ କୃଷ୍ଣଙ୍କ ଉପରେ। ପାଖଆଖ ହୋଇଗଲା ବେଳକୁ ଚାହିଁ ଦେଖନ୍ତି କୃଷ୍ଣ ଦରଦସା ହେଲା ପରି ଦୂର ବୃଷଭାନୁ ପୁରକୁ ଅନେଇ ରହିଛନ୍ତି। ଏସବୁ ଦେଖି ମଧୁମଙ୍ଗଳ ପଚାରିଲେ କୃଷ୍ଣଙ୍କୁ)

ମଧୁ:—କିଓ କାହ୍ନୁ, ସଖାମାନେ କାହାନ୍ତି? ତୁମେ ପଛରେ ଗଲ କାହିଁକି? ହେଲା କଅଣ?

ଶ୍ରୀକୃଷ୍ଣ:—(ଟିକିଏ ସଚେତ ହୋଇ) ନାଇଁ, ଝୁଣ୍ଟି ହେଲି ସଖା—

ମଧୁ:—(ଛଳ ଗମ୍ଭୀର ହୋଇ) କେମିତି? ଝୁଣ୍ଟି ପଡ଼ିଲ କେମିତି?

ଶ୍ରୀକୃଷ୍ଣ:—କଣ କି? ଦୋଷ ମୋର।

ମଧୁ:—ତା'ତ ନିଶ୍ଚୟ, ଏଣେ ତେଣେ ଚାହିଁ ଚାହିଁ, ଆସୁଥିବ। ଦେଖିଲ ନା—ମୋ ପରି ଏକା ମନରେ ଛେନା ପାଛୁଲି ଟିକି ଚାହାଁ, ଚାହିଁ ଆସୁଥିଲେ ଆଉ ଝୁଣ୍ଟାଝୁଣ୍ଟି ନଥାନ୍ତା—ନଜରଟା କେଉଁଠି ଥିଲାକି?

(ଇତି ମଧ୍ୟରେ ଦୋଳାଭି ଉପରୁ ଶ୍ରୀକୃଷ୍ଣଙ୍କ ଭାବ ଲକ୍ଷକରି ଲଳିତା ମୁରୁକି ମୁରୁକି ହସୁଥିଲେ—ତାଙ୍କ ମୁହଁରେ ଫୁଟି ଉଠୁଥିଲା ଯେପରି କି ସେ ଏସବୁ ଟିକିଏ ଉହସାଇ ନେଇଛନ୍ତି, ଆଉ ଏସବୁ କଥା ମଧୁମଙ୍ଗଳ ସଙ୍ଗେ କାହ୍ନୁଙ୍କର ଛଳନା ମାତ୍ର)

କୃଷ୍ଣ:—କୋଉଟି ଅଙ୍ଗ କଅଣ ? ଅସୁଭ ଥିଲି—

ମଧୁ:—ଦେଖେଁ ଦେଖେଁ—କୋଉଠି କଅଣ, ହୋଇଛି ? (ଦେଖି) ସତେତ ! ଓଠପଲ ହେବ ରକତ ବୋହି ଯାଉଛି !

କୃଷ୍ଣ:—ଯାଃ—ମୋର ଦେହେଣ କଅଣ ହଉଛି ଉମର ଖାଲି ଥଛା ( ରୁଷିବା ପରି ଟିକିଏ ଅଭିମାନ କଲେ )

ମଧୁ:—ଓହୋ ! ବୁଝିଲି, ବୁଝିଲି—ଭଉ ପିଣ୍ଡା ଦେଖି, ବଡ଼ ଘର ଦେଖି, ଭିତରୁ ଲାଜ ବୋହୁଲୀକ ? ଯା, ତା, ଘରେ ପଶି ଦହି ଟିକିଏ, ଦୁଧ ଟୋପିଏ ଚୋରି କରିବ ? ସେଇ ନଜରଟା ଗୁଲିଛି, ନାଁ ? ଜଣା ଗଲା ଯେ ! ଗୁଲ !—

କୃଷ୍ଣ:—ହଁ, ନୁହେଁ କଅଣ, ଏଇ ଥିଲା ଖାଲି ମୋର ବେଉଷା ?

ମଧୁ:—ଓଃ, ରଖ ରଖ, ନ ଦେଖିଲା ଲୋକ ଦେଖ—ନାଁ, କଇଁଥି କାନ୍ଦିଛି ବେକ । ଆମକୁ ଯେମିତି କଛି ଜଣା ନାହିଁ ! ଭାରି ଭଲ ଲୋକ ଯେ !

କୃଷ୍ଣ:—( ବିରକ୍ତ ପ୍ରକାଶ କରି ) ନ ହେଲେ ନାହିଁ, ଯା—

ମଧୁ:—ଯା କଅଣ ହେ ? ଯାହା କହିଲି ମୁଁ ନୁହେଁ ?

କୃଷ୍ଣ—ନାଁ ।

ମଧୁ—ନାଁ ! ? ତେବେ କୃଷ୍ଣା ନୁହେଁ, ଯେ, କଣ୍ଠା—

ଗୀତ

କେତେ ହସିବେ ଶ୍ୟାମ ଉମ କଥା କପଟ—
ଜାଣିଲି ଜାଣିଲି ମୁଁ ଗୁଲ ହେ !

କପଟ ଧନଟାରେ ଟାଙ୍ଗର ଭୁଇଁ ଟାରେ
କୃଷ୍ଣିବା ସତକି ବସ୍ତୁର ହେ ?

ଏ ନୁହେଁ ପଥ କୃଷ୍ଣା ଘୃଣ ପଥକୁ କଣ୍ଠା
ନୋହିଲେ ଦେଖା ମୁନା-ଭାଲ ହେ !

ଲଗୁ ପଡ଼ୁଛୁ ମୋତେ  ଜାଣି ନାହିଁକି କେତେ
ପରଘର ଗୁଣ୍ଡ ବେଭାର ହେ ?
ମୋତେ କେଲ ଭଲ  ସେ କଥା ସୁଦ୍ଧା ଗଲ !
ହସିବେ ଏ ବ୍ରଜ ବଜାର ହେ-
(ବୈଳ ପ୍ରସ୍ଥାନ)

## ୨ୟ ଦୃଶ୍ୟ

(ଜଳ ଘଟ ହସ୍ତେ ଶ୍ୟାମଳା ଓ ସଖୀଗଣ ବ୍ରଜପଥରେ)

ସଖୀଗଣ— ଗୀତ

ସଜ ସରସିଜ ମୁଖି ମୋ ସଙ୍ଗିରେ,
ଜପ ମୂଳକୁ ନ ଥିଲୁକି ଦେଖି ରେ
ଅନାଁ ଆସି ଛୋର ପିଢ ଲଙ୍ଘି, ମୋ ସଙ୍ଗିତରେ । ୧ ॥

ସାରସ ଘଞ୍ଜ ଗମନା-ନନ୍ଦନାରେ
କନକ ଲତାକି ଜଡ଼ୁଛୁ ଅନାଁ କିରେ
ଅଳି ଚମ୍ପକୁ କରୁଛୁ ମନା ମୋ ସଙ୍ଗିରେ । ୨ ।

ଯମୁନା ତଟ କେସନ-ମୋ ଧନରେ
ଧୀରେ ମଥା ଟେକି ଲହରୀ ମାନ ଗୋ
ସତେ କରୁଛୁ କି ଅଭିମାନ । ୩ ।

ବିଜେକର ନବ ବାଳି, ସଙ୍ଗାଳିରେ,
ତୋଳିବା ସୁମନେ ବନ କଥାଳିରେ
ଗୁନ୍ଥି ଦେବ ତୋ ଗଳାକୁ ମାଳ । ୪ ।

(ଗାଇ ଗାଇ ଚାଲିଗଲେ)

## ଷଷ୍ଠ ଦୃଶ୍ୟ

### ଯମୁନା ତଟ ।

(ସଞ୍ଜ ହୋଇ ଆସିଲାଣି-ଗୋଠ ବାହୁଡ଼ା ବେଳ ନଇଁ ହୋଇ ଯାଉଛି-କାହ୍ନୁଙ୍କର ଦେଖା ନାହିଁ-ମଧୁମଙ୍ଗଳ ତାଙ୍କୁ ଖୋଜି ଖୋଜି ବଡ଼ ବ୍ୟସ୍ତ ହୋଇ ଶେଷରେ ଯମୁନା ତଟରେ ପହଞ୍ଚି, ସେଠି ମଧ୍ୟ ପାଇଲେ ନାହିଁ-ନିତାନ୍ତ ବିରକ୍ତ ହୋଇ ଥକାମରା ପରି ବସି ପଡ଼ିଲେ)

ମଧୁ—(ସ୍ୱଗତ) ହୁଃ, ଆଉ ପାରିବି ନାହିଁ, ବ୍ରହ୍ମାଣ୍ଡ ଗୋଟାକଯାକ ତ ବୁଲି ଆଇଲି, ଦେଖା ନାହିଁ । କାହାକୁ ନ କହି କୁଆଡ଼େ ଯେ ଚମ୍ପଟ, କିଏ ଜାଣେ ? ଶଞ୍ଜ ଦେଖି, ସେଇ ଘରକୁ—ନହେଲା ବେଳକୁ ଦହି, ଦୁଧ ଚୋରି କରିବାକୁ ଯାଇଥିବେ । ଉଣାତ କୋଉ କଥାକୁ ନୁହନ୍ତି ! ଅଜ୍ଜ ଏକା ଗୋଠକୁ ଆସିଲା ବେଳୁ ସେ କାହିଁକି ଗୋଠ ଛଡ଼ା ବାଛୁରି ପରି ଭାରି ମନ ଉଡ଼େଇ ବସିଲା ଭଳି ଲାଗୁଥିଲା ! କଥାଟା କଣ ? ଡ଼ାକେଁ ଏଠି ଆଉ ଥରେ ! (ଉଠି ପଡ଼ି ନଈକୂଳକୁ ଚାହିଁ ଡାକିଲେ, ଉତ୍ତର ନପାଇ ବିରକ୍ତ ହୋଇ ପୁଣି ବସି ପଡ଼ିଲେ) ଯାଃ, ଆସିଲେ ଆସୁ ନୋହିଲେ ନାହିଁ—(ଏତିକିବେଳେ ଦୂରରୁ ଶ୍ରୀକୃଷ୍ଣ ଗୀତ ଶୁଭିଲା—ମଧୁ କାନେଇଁ ରହିଲେ)

ଗୋଧୂଳି ଗଗନ ତଳେ—
ପଶ୍ଚାତ୍ ଆସିବ କହିଥିଲା କାହିଁ
ଚାହିଁ ଚାହିଁ ଗଲା ବେଳ । ଘୋଷା ।

ଝୁଲଣାକ ହେଟଗା ମୋତେ, ସେଦିନର ସବୁ ସତେ ?
ଶତେକ ଯୁଗର ଉଜ୍ଜ୍ୱଳା—
ମରମ ଗୁମର ମନ କଥା ଯେତେ
ଛଳ ଛଳ ଆଖି ଜଳ । ୧ ।

କୁଞ୍ଜ ବିଥିକା ତଳ
ଝରିଲା କୁସୁମ ଦଳ
କେଉଁ ଗୁଞ୍ଜରଣି ମଳୟ ମଧୁର ସିଞ୍ଚି ମହୁଆ ଜଳ-
ଲହରି ଲହରି ଆସେ ଖରି
ସୁହାଗ ପହିଲି ରାତି
ଡାକିବ ଅନ୍ଧାରେ ଆଜ କି ଆସିବ
ସେ ତ ପରଘର ବାସୀ—
ନିରଜନ—ବନଥଳ । ୨ ।

ମଧୁ—(ଦୂରରୁ ଶ୍ରୀକୃଷ୍ଣଙ୍କର ଗୀତ ଶୁଣି କାନେଇଁ ଆନନ୍ଦ ଉପଭୋଗ କରୁଥିଲେ) ଏତ ସେଇ ଶଠକ ! କୁଆଡ଼େ ଡଙ୍ଗାଖେଣ୍ଡ ନେଇ ବୁଲୁଛି ମେଲ ! ତା'ର କଥଣ ?

( ଦୂର ଗୀତ କ୍ରମେ କ୍ରମେ ନିକଟରେ ଶୁଭିଲା )

କଦମ୍ବ ତରୁ ତଳରେ ଦୋହଡ଼ିବେଲେ ଦୁଃଖାଡ଼ିଲା ମଧୁ ଡାକିଲେ ) ନଟବର ! ଠିକ ଏ ଗୋଷ୍ଠିମଣ୍ଡଳୁ ଅଣା, ଗୋଠ-ବାଛୁରୀକୁ ମନକି ନାଇଁ କି ? ଯମୁନା ଜଳ ସଙ୍ଗରେ ଗୀତର ସୁଅ ମିଶାଇ ଦେଲ ନେ ! ଖେଳାଅ, ଖଟାଅ—ଡଙ୍ଗାଖେଣ୍ଡାଅ, ମୁଁ ଯାଉଛି—( ଉଠିଲେ )

କୃଷ୍ଣ— ଆସ, ଆସ, ସଖା ! ଆଜିଥରେ ବୁଲି ଯିବା । ତମକୁ ପାର କରାଇ ଦେବ । ଆଗପ ବାଆ ବହୁଛି, ହାତ ଗୋଡ ଲାଗିବାକୁ ନାହିଁ । ଯମୁନା ଉଡ଼ ପଡୁନାହିଁ, ଖାଲି ମଙ୍ଗ ଧଇଲେ

ଚାଲିଲ ! ଆସ, ଆସ, ଏକୁଟିଆଟା ସତେ ଏକା ମନ ଲାଗୁନାହିଁ ।

ମଧୁ—ମର ଯାଏଁ କର୍ମ ସୁହାଗ ! କେବେଳେ ସୁଖ ପାଆ ସତେ ? ସେଇଥିପାଇଁ ପର ଆପଣାର ଛୁନ ହୋଇ, ଖସି ଆସି, ନାଆ ମେଲି ଦେଇଛ ? ନାଁ ? ଦେଖିଲାରୁ—ସୁଆଗ ହୋଇ ପଡୁଛି ! ଚାଲ, ଆଜ ମାଆଙ୍କ ପାଖକୁ । ତମ ଏକୁଟିଆ ନାଆ ବୁଲାଟା ଛଡ଼େଇ ଦେଉଛି ଯେ !

କୃଷ୍ଣ—ଘଗ ନାହିଁ ସଖା, ତମକୁ କଅଣ ମୁଁ ଖୋଜି ନାହିଁ ? ପାଇଲି ନାହିଁ ! ଏଣେତେଣେ ବୁଲି କୋଳି ଖାଇ ଆସୁ ଆସୁ ଡଙ୍ଗାଟା ଦେଖି, ମନହେଲା ନାଆ ଖେଳିବାକୁ, ଆସ ଆସ !

ମଧୁ—ଅଚ୍ଛା, ଅଚ୍ଛା, ଡଙ୍ଗା ସେଇ କଦମ୍ବ ମୂଳେ ଖଟାଅ । ମୁଁ ବୁଲି କରି ସେପାଖେ ଯାଉଛି । ଗଲେ କଥାବାର୍ତ୍ତା ସିନା !

(ଦୌଡ଼ି ଚାଲିଗଲେ)

( ଆଗେ ଆଗେ ଶ୍ରୀମତୀ ପଛରେ ସଖୀଗଣ ଜଳ ଘଟନେଇ ଆସୁଥିଲେ-ଶ୍ରୀମତୀଙ୍କ ଦୃଷ୍ଟି ପଡ଼ିଲା ଶ୍ୟାମଙ୍କ ଉପରେ, ଚମକି ପଡ଼ିଲେ । ପଛରେ ସଖୀମାନେ ମଧ୍ୟ ଠିକିଏ ଅଟକି ଗଲେ, ଯାହାଙ୍କ ଚାଲିର ଗତି କମିଯିବାରୁ । ଶ୍ରୀମତୀଙ୍କୁ ବିଶାଖା ପଚାରିଲେ

ବିଶାଖା—ରହିଗଲ କାହିଁକି ? କଣ ହେଲା ସହି ? ଝୁଣ୍ଟିଲ କି ?

ଶ୍ରୀମତୀ—( ମୁଖ ପାଖରୁ ଅଞ୍ଚଳ ହଟେଇବା ପରି ) ନାହିଁ ସହି, ସେ କିଏ ସଖୀ ? କହିବ କି ?

ସଖୀଗଣ—କଅଣ, କିଏ ?

ଲଳିତା—(ଶ୍ରୀକୃଷ୍ଣଙ୍କ ଉପରେ ନଜର ପଡ଼ିଛି ତା'ର । ଆଗଭର ହୋଇ ଆସି) ଓହୋ ! ସ୍ବାଟକୋଇ କହୁଛ, ଠିକ୍ ହୋଇଛି । ମୁହିଁ ପଞ୍ଚବେଳ ଯାଏ ଭକ୍ତୁର କର କାହିଁକି ? ( ହସିଲା )

ଶ୍ରୀମତୀ—ଓଃ, ଅରେ, ଅରେ, କଏ ମ ଇଏ ?

ଲଳିତା—( ଗାଇଲେ ପରିହାସରେ )

ଗୀତ

ଅମାନିଆ ଭଅଁର ଟେଗୋ ଏଇ ସଞ୍ଜବେଳେ
ଅଳି କରେ ମଧୁ ଆସେ ତୋମୁଖ କମଳେ । (ଭ୍ରମର)
ସାରାଦିନ ଏଣେ ତେଣେ ବୁଲି ମଧୁଗୃଧି
ଅକୂଳେ ଫେରିଛି କଞ୍ଜ ମଞ୍ଜୁଳ କୁ ଦେଖି,
ଭ୍ରମେ ପଡ଼ୁଛି ନାହିଁ ଦୋଷ ତାର ତଳେ (ସ୍ୱାଧ) ।୧।

ରାଧା—ଛିଃ, ଛିଃ, ଥଟ୍ଟା କରିବାକୁ ବେଳ ମିଳିଲା ତତେ ? କହନା ତାକୁ ଦୂରକୁ ଯିବାକୁ ।

ଲଳିତା—[ଗାଇଲା] କାହାରକି ଦୋଷ ସତେ କହ କି କରିବୁଁ ?
ଶିଖାଇ କେ ନାହିଁ ସହୁ ଅଭିମାନ ହେବୁ
ତୋତେ କି ସାଜିବ ଅଳି ନଦୀତଟେ ଫେରିଲେ ? ।୨।

ରାଧା— [ଏକ ଦୃଷ୍ଟିରେ ଶ୍ୟାମ ରୂପ ଦେଖୁଥିଲେ-ମାନ ଲୋକ ଜାଣିବାକୁ ଛଳରେ ଲଳିତାକୁ କହିଲେ ) ଛିଃ ! ଭାରି ଦୁଷ୍ଟ ହେଲୁଣିତୁ । [ ତାହାଁ ଚାହିଁ ଚାଲିଗଲେ ]

## ୪ର୍ଥ ଦୃଶ୍ୟ

ବନପଥ ।

[ ମଧୁ ଏଣେ ତେଣେ ଚାହିଁ ଆସିଲେ ]

ମଧୁ—ନାଁଅ ବାନ୍ଧୁ ବାନ୍ଧୁ ଘଡ଼ିଏ ! ଗୁଲ୍, ଗୁଲ୍, ପହଡେ—ଏମିତିତ ନଥିଲା ବାବା ? କେତେବେଗ ଘୋଟିଲା ଯେ ! ସବୁ ଚକୁଳି ପିଠା ପରି ଓଲଟି ଗଲା ! ମୁଁ କହୁଛି ଗୋଠକୁ ଚାଲ, ବେଳ ଗଲା-ନାଁ ମୋତେ କହା ହଉଛି ଆଗରେ ଚାଲ ? ତମର କାମ କଣ ?

ଆଜ୍ଞ? ନାଃ କିଛୁ ଭିତରି ମାମଲତ ଅଛି। ଏଇକ୍ଷଣି ମୋତେ ଟିକିଏ ଆଡ଼ ଧାରଣା ଦଅ ହେଉଛି—ବାକି ଫିଟିବ ସବୁ।

[ ଦୂରରେ ଗୀତ ]

କିଏ? ଏ ଫେର କିଏ? ଆଚ୍ଛା, ଅଂଗେଇ ଚାଲେ ଜଣାଯିବ ଯେ!

[ ପ୍ରସ୍ଥାନ ]

[ ବ୍ରଜ ବାଳାଗଣଙ୍କର ପ୍ରବେଶ ]

ଗୀତ

ଧୀରେ ଚାଲ୍, ଚାଲ୍, ଚାଲ୍, ବ୍ରଜ ନାରୀ
ବ୍ରଜନାରୀ-କଅଁାପୁନା ଗୋରୀ, କୁମ୍ଭ ଅଡଭରୀ, ଭରି ଯମୁନା ବାରି।
ବଉଳ କୁଞ୍ଜ ଚାରୁ ଫୁଲ ମହକ
ପ୍ରାଣେ ପ୍ରାଣେ ଆଣି ଦଏ ପୁଲକ,
କାମ ବାଣେ ଦଏ ଘାରି।

[ ନାଚି ନାଚି ପ୍ରସ୍ଥାନ ]

---

## ୫ମ ଦୃଶ୍ୟ

ଉଦ୍ୟାନ ବାଟିକା

[ ବଉଳ ଗଛତଳେ ବେଦୀ ଉପରେ ବସିଥିଲେ ଏକୁଟିଆ ଅନମନା ଶ୍ରୀମତୀ, ପାଖରେ ଥିଲା ଫୁଲବୁଡିଏ। ଶ୍ରୀମତୀ ଫୁଲ ଗୁନ୍ଥୁଥିଲା-ବେଳେ ଦୂରରୁ ବଂଶୀ ଧ୍ୱନି ଶୁଣି ଚମକି ଉଠିଲେ। ନିକଟସ୍ଥ ପ୍ରକୃତିର ନାନା ଦୃଶ୍ୟ ପ୍ରତି ନଜର ନଦେଇ ଏକାଧ୍ୟାନରେ ଶୁଣୁଥିଲେ ବଂଶୀ—ଅନ୍ତରାଳରେ ଥାଇ ଲଳିତା ସମସ୍ତ ଲକ୍ଷ କରୁଥିଲେ। କିଛିକ୍ଷଣ ପରେ ଭାବୋନ୍ମତ୍ତା ଶ୍ରୀମତୀ ଗାଇଲେ— ]

## ଗୀତ

ଘରୁ ମୋର କାହିଁ ପଳାଇ ଯିବ ସେ
　　　　ଦୁଆର ମେଲିବ ନାହିଁ,
ମନ ସାଧ ମୋର ମନେ ମରୁ ପଛେ,
　　　　ତା ଗୁଣ ଗାଇବ ନାହିଁ;
ନାଆଁ ଧରି ତାର ଡ଼ାକିବ ନାହିଁ ମୁଁ
　　　　ଆଉ ଯଦ କିଏ ଜାଣେ—
ଘୁରି ଅଭିମାନୀ କେତେ ମୁଁ ଖୋଜିବ ?
　　　　ଲୁଚିବ ଅନ୍ଧାର କୋଣେ ॥
ବଉଁ ଘରେ ତାକୁ ବନ୍ଦୀ କରି ଥିବ
　　　　ବାନ୍ଧ ବାସ ଫୁଲ ହାରେ—
ଦୀପଟି ଜାଳିବ, ଜଗି ବସିଥିବ
　　　　ତାହାରି ଚରଣ ତଳେ ॥

ଲଳିତା—[ ଅନ୍ତରାଳରୁ ଡ଼ାକିଲେ ] ସହି !—

ଶ୍ରୀମତୀ—( ନିରୁତ୍ତର )

(ଲଳିତା ଧୀରେ ଧୀରେ ନିକଟକୁ ଆସି ପଛରୁ ଆଖିମୁଦ ଧରିଲେ)

ଶ୍ରୀମତୀ—( ଚମକି ପଡ଼ )-କିଏ ?

ଲଳିତା—[ ହାତ ଛାଡ଼ ଦେଇ ପଛ ପଟୁ ଚାହିଁ କହିଲେ ] ମୁଁ ଗୋ !

ଶ୍ରୀମତୀ—ସହି !·ଆ, ଆ,—[ ପାଖକୁ ଟାଣି ନେଲେ ]

ଲଳିତା—ଯିବ ଯେ—କହିବଟି ଅଗ !— ଅଜ କାହିଁକି ବଡ଼
　　ଏକା ଏକା—

ଶ୍ରୀମତୀ— ନାଇଁ—ଏଇ ବସିଛିତ !

ଲଳିତା—ବସିଛିତ ? ତା'ବଣ ମୋତେ ଦିଶୁ ନାହିଁ ?

ଶ୍ରୀମତୀ – ଆଜ୍ଞ ? –

ଲଳିତା – ନାଇଁ, ବସିଛ ଠିକ୍, ଡାକି ଏ ବସାଣ୍ଟା-ଟିକିଏ-ଅଲଗା ରକମର କେମିତି !

ଗୀତ

ଢଳ ଢଳ ନୟନ ଗୋ ! ଛଳ ଛଳ କାହିଁକି
ଅଞ୍ଚଳ ନଭିଜଣ୍ଟ ଚାହେଁ ?
ଆନମନେ ସଖି ! ଗାଅ କି ସଂଗୀତ ?
ଆନ ଭାବ ଉପୁଜାଏ ।
ଶିଥିଳ ନୀଳାଞ୍ଚଳ ଶିଥିଳ କବରୀ ଗୋ !
ପାଣ୍ଡୁର ଗଣ୍ଡ ନସାଜେ
କହ କୁସୁମେ ସଖି ! କାଣ୍ଟ କି ଦଂଶିଛୁ
ଅନ୍ତରେ କି ସୁର ବାଜେ ?

ଶ୍ରୀମତୀ – ନାଇଁ ତ, ସଖି – ( ହସିବାକୁ ଚେଷ୍ଟା କଲେ )

ଲଳିତା – ଠକାଠକି ତା ପାଖେ ବଡ଼ ସହଜ ନୁହେଁ । ଜାଣେ, ଜାଣେ, ଲଳିତା ହସ ଶଦ୍ଦି ଜାଣେ ସଇ !

ଶ୍ରୀମତୀ – ଠକୁଛ ନାହିଁ କିଛି, ସବୁ ଦନେ ଯାହା ଅଛତ ସେଇଆ ।
[ ଉଭୟଙ୍କୁ ଉଭୟେ ଟିକିଏ ଚାହିଁଲେ ]

ଲଳିତା – [ଅଭିମାନ କଲାପରି ମୁହଁ ଫେରାଇ] ଫେର ସେଇ କଥା ?

ଶ୍ରୀମତୀ – [ ଟିକିଏ ମନ କଷ୍ଟ ପରି ଦୀର୍ଘନିଶ୍ବାସ ପକାଇ ମୁହଁ ଫେରାଇ ] ଲଳିତେ ! –

ଲଳିତା—( ଗୁହଁ, ଟିକିଏ ନୀରବ ରହି ) କହିବ ନାହିଁ ତେବେ ?

ଶ୍ରୀମତୀ—କହିବ ନାହିଁ ? ତୋତେ ?

ଲଳିତା— ତେବେ ?

ଶ୍ରୀମତୀ — ନାଁ, ଭୁଲ କରୁଛୁ । ତୋତେ ଛାଡ଼ି ମୋର ଆଉ
କିଏ ଅଛି ସହି, ମନ ଦୁଃଖ ବୁଝିବ ?

ଲଳିତା — ଛିଃ, ମନ ଦୁଃଖ କରନାହିଁ ଧନ ! କଥାଟା କଅଣ
ଖୋଲି କହ — ଦେଖିବା ଯଦି କିଛି ଉପାୟ ଥାଏ —

ଶ୍ରୀମତୀ — ଉପାୟ !—(ଲଳିତାକୁ ଅଳ୍ପ ଚୁହିଁ, ପୁଣି ଅନ୍ୟ ଆଡ଼େ
ଫେରିଗଲେ )

ଲଳିତା — ହଁ !

ଶ୍ରୀମତୀ — କେଜାଣି — (ଚୁହିଁ ରହିଲେ )

ଲଳିତା — ଆଚ୍ଛା, ଶୁଣେ, କଥାଟା ଶୁଣେ ଆଗେ ।

ଶ୍ରୀମତୀ — [ ରହି ରହି ] ସେଇ, କାଲି କଥା ସହି ! କାଲି ସଞ୍ଜ
ମୋ ଜୀବନରେ ଗୋଟାଏ ନୂଆ ପବନ ବୁହାଇ ଦେଇ
ମୋତେ ପାଉଛି ସଖି ! କଅଣ କହିବ ତୋତେ ଲଳିତେ ?
[ ଲଳିତାଙ୍କ ହାତ ଚିପି ଧରିଲେ ]

ଲଳିତା — [ ବୋଧ ଦେଇ ] ଛି, ଛି, ଲଳିତା ପାଖେ ଏତେ କୁଣ୍ଠା
କାହିଁକି ସହି ?

ଲଳିତା — ( ପୂର୍ବପରି ହାତ ଚିପିଧରି ଗାଇଲେ )

[ ୭ ]

କେଦାରରେ—

କହିତ ନୁହଇ ଭାରତୀରେ । ଘୋଷା ।

କାଲି ଯା ହୃଦୟ ଦେଖି    କଳନା କଲା ମୋ ଆଖି
ଧଳା ଇନ୍ଦୀବର ଅନ୍ତରରେ । ୧ ।

କେଳି କଦମ୍ବ ତଳର    ବୋଲେ କି ଶ୍ୟାମଳ ତାର
ତେଜ ସେ ରବିସୁତାର ନୀରର । ୨ ।

କମ୍ପି ମୋର କଳେବର　　ହୋଇ ଗଲା ଆଉ ପା'ର
ଯାହାକୁ ଡ଼ରଇ ତାର ଗୀତରେ । ୩ ।

କି ମୋହନ ଲୀଳା ଧରି　　ବୋହି କଳାବର ଶିରୀ
ପୂରିଛି ସେ ଶ୍ୟାମ ମୂରତିରେ । ୪ ।

ଲୁଚ୍ଛା କରେଁ ମୁଁ ଯାହାକୁ　　କାହିଁକି ସରଳ ତାକୁ
ଶରମୁ ରଖିଲ ଜବତୀରେ । ୫ ।

ଲଳିତା — [ ଗୀତ ପରେ ] ନାଁ, ଠିକ୍ ହେଲା ନାହିଁ ସଖି ! ଅଲକ୍ଷିତ ନଭ୍ରାବ ଏକାବେଳେ ଯେ ହେଉଁ ପଡ଼ିଲ ! ଠିକ୍ ହେଲା ନାହିଁ ଗଇ !

ଶ୍ରୀମତୀ — ଠିକ୍ ଭୁଲ ଭାବିବାର ବେଳ କେଉଁଠି ଥିଲା ସହି ? ସୁନ୍ଦର ସଞ୍ଜ ପବନରେ ଯେତେବେଳେ ସେଇ ବୀଣାକଣା ମଧୁର କଣ୍ଠର ଲଳିତ ମୂର୍ଚ୍ଛନା ବହୁ ଦୂରରୁ ଧୀରେ ଧୀରେ ଭାସି, ଭାସି, ଚୋର ପରି ପଶିଲା ସହି ! ଏଇ ଅବଳାର ଦୁର୍ବଳ ହୃଦୟ ମନ୍ଦିରରେ ମୋର—

ଲଳିତା — [ ବାଧା ଦେଇ ] ବୁଝିଲି, ହେଲେ ସହି, ବହୁତ ଦୂର ସେ । ସ୍ୱର ତାର ମଧୁର ସତ, — ବାକି, ବୁଝି ନାହିଁ ସହି, କି ମୂର୍ଚ୍ଛନା ଦଏ ସେ । ମନ ତାର କି ସ୍ୱରରେ ବନ୍ଧା, ଜାଣି ନାହିଁ ତ ! ଶୁଣିଛି, ଲୋକେ କହନ୍ତି, ତାର ଅନ୍ୟ ନାମ — ନାସମସ — ନାଁ, ଭଲ ହେଲା ନାହିଁ ସହି— ଭଲ କଲି ନାହିଁ ।

[ ଖ ]

ଖଗପ ତୁ ହେଲୁ ରେ,
ଖେଳନ୍ତେଳଖଞ୍ଜନାକ୍ଷୀ କି ସାହସ କଲୁ ରେ । ପଦ ।

ଖଙ୍ଗ ହୋଇ ସୁରତରୁ କୁସୁମ ବାଞ୍ଛିଲୁ ରେ
ଖେଦ ବୀଜ ନିଜ ହୃଦ-କେଦାରେ ବୁଣିଲୁ ରେ । ୧ ।

ଖିଆଲ ପରଙ୍କ ଧନ ମନରେ ଭାଳିଲୁ ରେ
ଖଳାକାର ନୋହୁ କଳା ନାଗକୁ ଚାଳିଲୁ ରେ । ୨ ।

ଖର୍ବ ସ୍ବର ହାଉଳିବା ଶ୍ରୀଅଙ୍ଗ ପାଇଲୁ ରେ
ଖମଣିମଣ୍ଡଳକୁ ତୁ କର ବଢ଼ାଇଲୁ ରେ । ୩ ।

ଶ୍ରୀମତୀ—ଲଳିତେ ! କରିବାର ଯାହା ତ କରିସାରିଛୁ, ବିବେକ, ବିଗ୍ଭର, ଦମ୍ଭ, ଲାଜ, କୁଳ—ସବୁ ସହି, କାଲି ଦିନ ଶେଷର ସେଇ କଳା ଅନ୍ଧାର ସଙ୍ଗେ, କଳ ଯମୁନା ଜଳରେ, ତା'ର କଳାଚରଣରେ ଉପହାର ଦେଇଛୁ । କ'ଣ ବାକି ଅଛୁ ଆଉ ?

ଲଳିତା —ଆଉ ବାକିସାକି ଖୋଜିବାର ବେଳ କି ହେଉଛି ଅଛୁ ? ଖଣ୍ଟି ପାଖେ ଧନ ଦେଇ ଆଉ ଭାବିବାର କଣ ଥାଏ ? ଥରେ ପଗ୍ଭରି ଦେଇ ଆମ୍ଭମାନଙ୍କୁ ଆଖି ପକାଇଥିଲେ ହୋଇ ନଥାନ୍ତା ? ବିବେକବତୀ ହୋଇ ଅଳ୍ପକେ ଭାସିଗଲୁ ଯାହା !

ଶ୍ରୀମତୀ—ବଢ଼ାଅ ନାହିଁ ସହି, ଆଉ ଦୁଃଖ ବଢ଼ାଅ ନାହିଁ ମୋର । ଲଭିବାର ଉପାୟ କହ, ଜଳାଇ ମାର କଣ ଆଉ ? ଭାସି ତ ଗଲିଣି ସହି, ଏକାବେଳେ ଅଥଳରେ । ଲୁଚା

ଛିଅଙ୍କ ଏତେବେଳେ ମୋତେ ନଉକା ପରି ଲାଗୁଛୁ ।
ତୋ ଛଡ଼ା ଆଉ କାହାକୁ ଖୋଜିବି ଭଲ –

[ ଗ ]

—ଗନ୍ଧଣିତ ଗଳ୍ପ କଥା—

ଗୁପତେ ସିନା ମୁଁ ତୋତେ ପଚାରୁଛୁ
ବଳ ପଡ଼ିବାରୁ ବ୍ୟାଥା ରେ – (ସଙ୍ଗୀତ)

ଗଙ୍ଗାରୁ ବିଶଦ ଗମ୍ଭୀର ତୋ ହୃଦ
ଗଣ୍ଡିଧନ ତୋର ସ୍ନେହ,
ଗୋଡ଼ ଖସି ଖେଦ ହେବାର ଦରଦ
ଯିବାର ଉପାୟ କହ ରେ । ୧ ।

ଗଞ୍ଜାଇଲ ଜଣେ, ଲଗି ଯାଙ୍କେ ପୁଣି
ରଞ୍ଜାଇଲ ମନେ ଝଳ
ଗିଳା ଗରଳରୁ କାଢ଼ୁ ପୀୟୁଷରୁ
ସ୍ୱାଦୁଗୁଣ ଗନ୍ଧ ବଳ ରେ । ୨ ।

[ଦୂରରୁ ବଂଶୀ ବାଜି ଉଠିଲା—ଘନ ଘନ । ଗୀତ ଗାଉ ଗାଉ ଶ୍ରୀମତୀ ଉଠି, ସେଇ ଧ୍ୱନି ଅନୁସରଣ କରି, ଚାଲିଲେ । ଲଳିତା – ଏକ ଦୃଷ୍ଟିରେ ତନ୍ମୟ ଥିଲେ । ଯାଉ ଯାଉ ଶ୍ରୀମତୀ ଗୋଟିଏ ଡାଲରେ ମଥା ବାଜି ବାଧାପାଇ ପଡ଼ିଯିବା ବେଳକୁ ହଠାତ୍ ଲଳିତା ଉଠି, ଧରି ପକାଇ ସମ୍ଭାଳି ନେଲେ ]

ଲଳିତା – ଛୁଃ, ଛୁଃ, ଛୁଃ, ସହ !

[ ଘ ]

ଘେନାଇ ଅଟମ୍ଭ ଯେତେ କହିଲୁ ରେ ।
ଘେନିଲୁ ନାହିଁ ବାଳା ପଢ଼ିଲୁ ରେ ।
ଘଟଘଟକୁ ଶିକ୍ଷା — ଶିଖା ପାଖରେ ରକ୍ଷା
ଶିଖିପଦେହା ଏହା ସହିଲୁ ରେ । ପଦ ।

ଘତ୍ରୁନାଥନନ୍ଦନା ଅନାଁଜଣିକି ମନା —
କରୁ ଯେ ଥାଉଁ ଦୃଷ୍ଟି ଚାହିଁଲୁ ରେ
ଘଣ୍ଟୀ ସଙ୍କେ କରେ ନାହିଁ କି ଶବେଦ ଭରେ
ମହାର୍ଣ୍ଣବରେ ଅବଗାହିଲୁ ରେ । ୧ ।

ଘୋରି କଣ୍ଠେ ମୂଳ ଘୋର ଘୋର ଜାଙ୍ଗଳ
ଗରଳ ଭୁଲେ ତାହା ପିଇଲୁ ରେ
ଦୂମାଳବର ସମ୍ଭ — ବିମ୍ବ ନାହିଁ କି ଅମ୍ବ
ସୁଯୋଗ ବିନା ବନ୍ଧ ଅଇଲୁ ରେ । ୨ ।

ଘେନାଘେନାଇଁ ଯାଇ କହିବା ସମପାଇ
ଘଟିଲେ ଅମ୍ଭେ ଏକା ଜାଇଲୁଁ ରେ
ଘଟନା ବିରହରେ ଅବଶ୍ୟ ତ କହରେ
ତେବେ ଯେବେ ଆତ୍ମଘାତୀ ହୋଇଲୁ ରେ । ୩ ।

[ଛମତୀ ମଥା ତଳାଇ ଥାଅନ୍ତି — ଲଳିତା ସମ୍ଭାଳି ନେଇ ବସାଇଲେ]

---

## ଷଷ୍ଠ ଦୃଶ୍ୟ

( ପଥ )

[ ଦୂରରୁ ବଂଶୀଧ୍ୱନି କ୍ଷୀଣରୁ କ୍ଷୀଣତର ହେବାକୁ ଲାଗିଲା । କିଶୋରୀ ପ୍ରବେଶ — ଧ୍ୱନି ଶ୍ରବଣ — ତା'ପରେ ଗାଇଲେ ]

( ଗୀତ )

କାଳିଆ ଦୂରେ ବଜାଅ ମୁରଲୀ,
ଏତେକ ଲଭ ଯୌବନ ଫୁଲ କୁଞ୍ଜେ-
ଅଳି ଗୁଞ୍ଜେ-ଏ ସଞ୍ଜେ-ସଳିଲ । ୦ ।

ଆନନ୍ଦ ଭରେ ଗନ୍ଧବହ ମନ୍ଦ, ମଧୁରେ ମଧୁରେ-ମଧୁରେ,
କାମିନୀ ଧନୀ ଚଞ୍ଚଳ ଅଧର ବଧୂରେ-ବଧୂରେ-ବଧୂରେ,
ତା'ର ସମ୍ବେଦନା—ତା'ମନ ମାନେନା-ପାଶୋରେ ଲାଜ ମାନ କୁଳ
ଗୋପ ବଧୂରେ-ବଧୂରେ-ବଧୂରେ
ଯାଅ କାହ୍ନୁ ଛୁଃ ମୁଁ ତ ସରମେ-ସରମେ ସରିଲି । ୧ ।

ସେ ତ କଞ୍ଜ ପଦେ ରଞ୍ଜି ନାହିଁ ରଙ୍ଗ ଅଲତା-ଅଲତା-ଅଲତା,
ଚେରଚେଇ ଚକାଏ ଖେଳେ ଗୃହୁ ଭୁଲତା-ଭୁଲତା-ଭ୍ରୁଲତା
ତା କଜ୍ଜଳ ଲଭନ୍ତି ସମ୍ପଦ ନୟନ ନୀରେ
ଯା, ଛୁ, ଭଲ ଦୂରେ ବଜା ଯା
ଜୁହାର, ଜୁହାର, ହାରିଲି । ୨ ।

( ପ୍ରସ୍ଥାନ )

( ଅନ୍ୟ ଦଗରୁ ମଧୁ ପ୍ରବେଶ )

ମଧୁ—(କାନେଇଁ ରହିଲେ, କିଛି ନଶୁଭିବାରୁ) ଏଁ ? ଚୁପ୍-ଚୁପ୍ ! କାନେଇଁଲିଛୁ ସବୁ ଚୁପ୍ ! ସ୍ତ୍ରୀ ଭିତରେ ତେବେ କିଛି ଘେଞ ଅଛି ! ଦେଖେଁ ତ (ପୁଣି କାନେଇଁ) ସେଇ ଚୁପ୍-ଚୁପ୍-ଫେର ସବୁ ଚୁପ୍ ? ଏ କଅଣ, ଡାହାଣୀ ନା ଶରଗୁଣୀ ? ମତେ ଦେଖି ଦୃଷ୍ଟି ଦେଇ ନାହିଁତ ? ମାଆ, ମୋର ତ ପିଲାଟି ଦିନରୁ ଏଇ ଦୃଷ୍ଟି ପଡିଯିବ କିବାଲି ମୋତେ ବେଳେ

ଔଷଧ କରୁଥାଏ । ପିଲାଦିନେ ମୁଣ୍ଡ କୁଣ୍ଡାଇ, ମାଙ୍ଗୁ ପାଉ, ହଳଦ ଲଗେଇ, ନାଲି କାଛ ଝଣ୍ଡେ ପିନ୍ଧାଇ, ଯେତେବେଳେ ମାଆ ମୋର ମତେ ଦାଣ୍ଡକୁ ଛାଡଦଏ; ମୁଁ କୁଆଡେ ଭାରି ସୁନ୍ଦର ଦିଶେଁ ! ଡାହାଣୀ ଖାଇଯିବ ବୋଲି ମୁଣ୍ଡରେ ମୋର ଥୁଉ ଥୁ କରି ମେଞ୍ଚେ ଛେପ ପକାଇ ଥାଏ । ଏବେ କଅଣ ମୁଁ ସେମିତି ସୁନ୍ଦର ଅଛି ନାଁ ? ଥିବ, ଥିବ—ନୋହିଲେ, ମୋ ଉପରେ ଏତେ ଦୃଷ୍ଟି ପଡନ୍ତା ? (ପୁଣି କାନେଇଁ) ହେଇରେ ବାବା, ସେଇତ ! ( ସଭୟେ ) ସେଇ ଟୁପ୍-ଟୁପ୍-ଫେର ସବୁ ଚୁପ୍ ! କଥାଟା କଅଣ ? ଦୁଇ ଜଣ ନଷ୍ଟେ, ନୋହିଲେ ଗୋଟାଏ ଟୁପ୍ ହୁଅନ୍ତା ଏତ ଟୁପ୍ ଟୁପ୍ ଦ' ଟା ଟୁପ୍ — ଦ' ଜଣ । ତେବେ କିଏ ଏ ସବୁ ? ହୁଁ, କୋକମିନା, ଅନ୍ଧାର ଘୋଡ଼ୀ—ଦହେଁ ! ଓଃ (ଚମକି ଉଠି ଛାତିରେ ଛେପ ପକେଇ) ମାଆ କହୁଛି, ଏଡ଼େ ଏଡ଼େ ଦାନ୍ତ, ସୁର୍ଯ୍ୟ ପରି ଆଖି, କୁଲା ପରି କାନ—ଡ଼ର ତ ଲାଗୁଛି ! ପଳେଇ ଗଲେ ବଞ୍ଚେ । ଗଛ ସନ୍ଧିରେ ଲୁଚିଯିବି କି ? (ଅଳ୍ପ ଦୂର ଯାଇ) ଏଁ ? ସେଇତ ! ସେଇ ଟୁପ୍ ଟୁପ୍ ତ ! କଣ ଭଲ ଦହୁଙ୍କ ବିଲୁର ପଡଥିବ ? ମୋ ଗଣ୍ଡିଟା କିଏ ଖାଇବ, ମୁଣ୍ଡଟା କିଏ ଖାଇବ—ଏଇ କଥାତ ନଷ୍ଟେ (ଥରି) ଦେହିଁ, ଦେହିଁ, ଦେହିଁ, (କାନ୍ଦି) ମାଆ ଲୋ ମଲି ! ରଖ ଲୋ ମାଆ, କାନରେ ତୋର ଗୋଟିଏ ବୋଲି ଆଖିକି ବାନ୍ଧି ରଖ ଲୋ ମାଆ, (ଟିକିଏ ଭୁନବହୁ) ଅଇଲୁ ନାହିଁ ? ତେବେ ତାଙ୍କରି ଶରଣ ପଶେଁ, ଆଜ କୁଆଡେ ପଳେଇବି ? (ମୁଣ୍ଡରେ ହାତଦେଇ) ରଖ ଲୋ କୋକମୀନା, ରଖ ଲୋ ଅନ୍ଧାର-ଘୋଡ଼ୀ, ଏଭଳି ଥରକ ରକ୍ଷା । ଏ ଶିରକମଳ ଏଇ

ଥରକ ବର୍ଷିଲେ, ଭମର ବୋଲ୍ ଜାଣ । ( ମୁଣ୍ଡିଆ ମାରି )
ହେ ମାଆ କୋକମିନା, ହେ ମାଆ ଅନ୍ଧାର ଘୋଡ଼ୀ ! ଏଇଠି
ଡୋଠି ଙ୍କୋଠି ମୁଣ୍ଡିଆ (ମୁଣ୍ଡିଆ ମାରୁଥିବା ବେଳେ ତୁଳସୀ
ଓ ବିଶାଖା ଦୁହେଁ ପଛୁଆଁଲେ ହସି ହସି )

ବିଶାଖା—କଉ, କଉ ମଧୁମଙ୍ଗଳ, କାହିଁକି ଏମିତ ରଡ଼ ପକାଉଛ, କଉ ଖାଇ ଯାଉଛନ୍ତି କି ?

ମଧୁ—( ଉଠି ) ଛାତି ଥରୁଛି, ଜୀବନ ରହିଲା । ରଖିଲେ ମାଆ ! ( ଦୁଇଜଣଙ୍କୁ ଚାହିଁ ) ଓଃ, ଏଇ ଦୁହେଁ ଚୂପ୍, ଚୂପ୍ ! ହିଁ ଏଥର ?—

ତୁଳସୀ—କଉ ! ଏକଣ, ଜୀବନ କଅଣ ଯାଉଛି ? ଡ଼ରରେ ଘାନଆଁ ହେଲକି ?

ମଧୁ—ଡର, ? କି ଡର ? କାହାକୁ ? ବ୍ରାହ୍ମଣ ଆମେ, ଡ଼ର କାହାକୁ ? "ନଭିତ ବିପ୍ର ଦୁର୍ଜ୍ଜନାଃ" ଜାଣ ?

ତୁଳସୀ—ଆଜ୍ ଏଡ଼େ ପାଟି କରି ମୁଣ୍ଡିଆ ମାରୁଥିଲ କାହାକୁ ?

ମଧୁ—ଶୁଦ୍ର ଗୁଡ଼ାକ ! ଶୁଆ, ବାଡ଼ ସନ୍ତକ ତୁମର । ବ୍ରାହ୍ମଣର ପୂଜାରେ ବିଘ୍ନ ଘଟାଇଲ ! ପୁଣି ପଚାରୁଛ ପାଟି କରୁଥିଲ କାହିଁକି ? ବେଦ ପାଠଟା ହେଲା ଆମର ପାଟି ? ପଳା, ପଳା !

ବିଶାଖା—ମୁଁ ଏବେ, ସ୍ୱା, ବୁଝିଛି ? କୋକମୀନା ଫେର ବେଦ ? ହଉ, ହଉ, ତମ ବେଦ ସେଇ । ଯେମିତ ବ୍ରାହ୍ମଣ, ସେମିତ ଦଅଁ ।

ମଧୁ—ତୁମେ ଶୁଦ୍ର ଗୁଡାକ ଏଠୁଁ ଗଲ ! ମୁଁ ପୂଜାରେ ବସେଁ !

ବିଶାଖା—ଓହୋରେ ପୂଜା !

ମଧୁ—ସାବଧାନ କର ଦେଉଛୁ, ଥରେ, ଦଥର, ତିନିଥର । ଦେଖୁଛ ନା, ଏ ବେଦପଢାକୁ ? କେମିତି ବ୍ରହ୍ମତେଜରେ ଜକ୍ ଜକ୍ କରୁଛୁ ।

ତୁଳସୀ—ରଖ, ରଖ, ତମ ପଇତା । ଆମେ ସବୁ ତମର ପାଖକୁ ଖୋଜି ଖୋଜି, ଆସିଛୁଁ ।

ମଧୁ—କଅଣ ? ଅନୁସରଣରେ ଡେବେ ? ଭେଟି କାହିଁ ? ଅଣ, ଦଅ । ପୂଜା କରି କରି ତ ଭୋକ ଲାଗିଛି । ଆଗେ ବ୍ରାହ୍ମଣ ସନ୍ତୋଷ ହେଉ ତ !

ବିଶାଖା—ହଉ, ହେବ । ଚାଲ ତମକୁ ପେଟେ ସଜ ଲହୁଣୀ, ଶାକର ମିଶାଇ ଖାଇବାକୁ ଦେବା ।

ମଧୁ—ସତ କହୁଛ ? ଦବତ ? ସତ୍ୟ ?

ତୁଳସୀ—ହଁ, ହଁ, ସତ୍ୟକଲି !

ମଧୁ—ହଉ, ତେବେ କଣ କହିବାର କୁହ—( ନିଶ୍ଚଳ ଭାବେ ରହିଲେ )

ତୁଳସୀ—ଶୁଣ, ତମ ସଖା କେଉଁଠି ଥିବେ ଏତେବେଳେ ?

ମଧୁ—ସେକଥା ? ସେକଥା-ମୋତେ ପଚାର ନାହିଁ ଏତେବେଳେ । ମୁଁ ଏବେନେ ଗୋଠ ଖଣ୍ଡିଆ ଗାଇ । ଦେଖ ଆମର ବ ସେ କଳାକହ୍ନୁ ହୋଇ ନାହାନ୍ତି, କଳାନାଗ ! ଦେଖିଲ ଫଣା ଟେକି ମୋତେ ଫଁ ଫଁ ହେଉଛନ୍ତି । ଘୁନଆଁରେ ଏଠି ସେଠି ବୁଲୁଛି ସବୁ !

ବିଶାଖା—ଏ କେମିତି କଥା ? ସତଟି ନ କହିଲ ଭୋଜନ ନାହିଁ । ଆଜି ନ ପାଅ—ଏ କଥାଟି ମନେରଖି କହୁଥା ।

ମଧୁ—( ନେତ୍ରୀମାନଙ୍କ ସଂପର୍କ ଦେଖି ଏକାଏ ଭାବନା ଥିଲେ )
କହୁଛନ୍ତି, କଣ୍ଟକ ମିଛ କହୁ ନାହିଁ ସମାଉ ।

ତୁଳସୀ—ଅଚ୍ଛା, ଏଣେ ସଖୀଙ୍କ ଭ୍ରମର ଆଗେ ଏମିତି କଳା ନଥିଲେ । କହ ଦେଖି, କେଉଁଠି ବୁଲି ଏମିତି ହୋଇଗଲି ?

ବିଶାଖା—ଆଉ, ଯାହାଙ୍କୁ ଏମିତି କହିଲେ ?

ମଧୁ—( ନିଜେ ଏ ଅବସ୍ଥା ଦେଖି ) ହୁଁ, ତାପର ?

ବିଶାଖା—ତା'ପର ଆଉ କଣ ? ଏତିକି ।

ମଧୁ—କିଏ, ଏତିକି ଏତେଟା ? ମୁଁ କେବଳ ଆକଳି ଛୁଥିଲି ।
ଏମାନେ ତେଣେ ବେଳୁ ବଣ୍ଟ ଆଜି ଉ ଧନ୍ଦକାଳ ଧାରେ ନେ
ତାଙ୍କୁ କିପରି ଦେବି, କହ ? ସେଥିକି ମୁଁ ନେଇଗଲି
ସହଯାଇ ତାଙ୍କର ଅଳଙ୍କାର ଟା ତା'ପର ଟିକଟା ଭୁଗଟା ମୋର

ବିଶାଖା—ପରିହାସ ଥାଉ, କହ, କଣ ଜାଣ ?

ମଧୁ—ଜାଣିଣ କହିଣ ? ଅନୁମାନ ସିନା । ଜାଣିଥିଲେ ତ ତାଙ୍କ
ପେଟ ଭିତରେ ଥାଆନ୍ତି ।

ତୁଳସୀ—ଅଚ୍ଛା, ସେଇ ଅନୁମାନଟା ତୁମର ଶୁଣେ ।

ମଧୁ—ଶୁଣ, ଦେଖିବ ନା ଦେଖିବ ?

ବିଶାଖା—ଶୁଣୁଛୁ ।

ମଧୁ—ଆଚ୍ଛା. ( ଝିଣ୍ଡିକାସ ମାନ ଗାଇଲେ )

ଶୁଣ ସଜନ ! ଦେଉ ମନ କର୍ଣ୍ଣ
ଚିହ୍ନ ଦେଖିରୁ ଯାହା ଅନୁମାନ ।
ଏ ତ ଧାନ ରଙ୍ଗ ଛଅ ହୋଇଗଲା
କାହିଁ ଖଣ୍ଡିଆ ମଳପୁ ବହିଲା ।

ବଡ଼ ସକାଳୁ ଗଉଡ଼ଙ୍କ ବାହାର
ମାଆ ଯଶୋଦା ବାଢ଼ିଲେ ଆହାର ।
କାଣ ଅଂମେଦ ବ୍ରାହ୍ମଣିଆଁ ଜାଉ
ଯୋଗେ ମିଳନ୍ତେ କେଉଁଣକ ଧାଆନ୍ତୁ ।
ସବ୍ ଶାକର ନବାଡେ ଭୋଜନ
ଯେହ୍ ଗୃହଶତ୍ରୁଦ ହେଲା ଓଜନ ।
କାହ୍ନୁ ଗଉଡ଼ ପିଲାଙ୍କ ସଙ୍ଗରେ
ଗୋଠ ଘେନି ଗୃଲଗଲେ ଆଗରେ ।
ଆସେମ ଷାଠିଏ ନିଶ୍ୱାସ ମାରଲ୍ଲି
ଛେନା ମଣ୍ଡାଏ ଘେନି ବାହାରେଲ୍ଲି ।
ଦେଖୁ କାହ୍ନୁକୁ ଭାବେ ଏକୁଟିଆ
କିସ ଉକାଇ ହୋଇଅଛୁ ଠିଆ ।
ନନା ଠକାଠକିରେ କି ଅଛନ୍ତୁ
କହ୍ନୁ ନାଗୀ ନକ୍ଷଣ ଶପିଛନ୍ତୁ ।
ନେଇ ଗୃଲଲ୍ଲ ଗୋଠକୁ ସଙ୍ଗରେ
ମୋତେ କଥା ନ କହିଲେ ରାଗରେ
ମୁହିଁ ଭୁରୁକୁଣ୍ଡା କର ଗୋଠରେ
ମନ ନ ଥାଏ ପିଲାଙ୍କ ମେଣ୍ଟରେ ।
ଖଞ୍ଜେ ପଠିଟେ ମାଇଲା କହାଇ
ଯାଇ ନାଆ ଲଉଡ଼ ଖେଳୁଆଇ ।
ଭାଲୁ ଖୋକ୍ଷ ଖୋକ୍ଷ ହେଲ ହାଲିଆ
ବେଲ ବୁଢ଼ ମେଘ ହେଲା ନାଲିଆ ।
ଏବା ଥିଲାତ ସୁନ୍ଦର କହାଇଁ
ଦୃଷ୍ଟି କାହାର ପଡ଼ଛୁ ଭଲଇଁ ।

ଘରେ ଲେଉଟି ନବୁଟେ ଲବଣୀ
ଦିନୁଁ ଦିନ ତନୁ କ୍ଷୀଣ ହେଲଣି ।
ଏଣେ ତେଣେ ବୁଲୁଛୁ ଏକୁଟିଆ
ସେଥି ଖୋଜୁଛୁ ସଦା ! କି ସୁଠିଆ ।
କାହା ନାଗପରି ମୋତେ ମିଶୁଛୁ
ଜାଣି ନପାରେ କି ରୋଗ ଧୋଇଛୁ ।

ବିଶାଖା—ହଉ ହଉ, ଏ ପ୍ରବଣ ଏତିକି ଥାଉ—ଶୁଣ । ଯାହା
କହୁଛୁ ଶୁଣ ।

ମଧୁ—( ନିରୁତ୍ତର )

ବିଶାଖା—ତମକୁ ଲଳିତା ଖୋଜୁଥିଲେ । ତମ ସଖାଙ୍କ ରୋଗକୁ
ଔଷଧ ଦେବେ ସେ । ତୁମେ ତାଙ୍କ ପାଖକୁ ଚାଲ । ଗଲେ
ସେଠୁଁ ଯାଇଁ ତମ ସଖାଙ୍କୁ ଔଷଧ ଦେବ ।

ମଧୁ—ଏଇନେ ତ ନୁହେଁ ?

ତୁଳସୀ—କାହିଁକି ? କଣ ଯୋଗ ଲଗ୍ନ ଖୋଜା ଖୋଜି ଦର୍କାର ?

ମଧୁ—ନୁହେଁ କଅଣ ? ଏଇନେ ଯେ ଭୋକ । (ପେଟ ଦେଖାଇ)

ବିଶାଖା—( ହସି ) ବେଶ୍ ସେ କଥା ବି ବୁଝାଯିବ ।

ମଧୁ—( ଆନନ୍ଦରେ ) ବୁଝାଯିବ ? ବା, ବା, ବାଃ, ଚାଲ ତେବେ,
ଆଗେଇ ଚାଲ । ଗାଇ ନାଚ, ଅମରମଧା ହୋଇ ଟିକିଏ
ଅନଡ଼ଅଣ୍ଟାକୁ ଭାଙ୍ଗିଦେଇ ଯାଏଁ । ଚାଲ, ଦୋବାଟି ପାଖେ
ତମକୁ ଭେଟୁଛୁ । ମୁଁ ଏଇ ଗଲି ବୋଲି ଜାଣ ।

( ବିଶାଖା ଓ ତୁଳସୀ ହସି ହସି ଚାଲି ଗଲେ )

( ଗୀତପର-ଦୀର୍ଘଶ୍ୱାସ ମାରି )

ନାଁ-ଅନେକ ଦୂର—ବହୁତ ଦୂରରେ ସେ ! ବାମନ ମୁଁ—ଚନ୍ଦ୍ର ଧରିବାର ଆଶା ମୋର୍ କାହିଁକି ? ତଥାପି-ତଥାପି-କିଏ ? କିଏସେ କହେ, କିଏସେ ଦିଏ ଯେ ଆଶା ? ପାଖେ ପାଖେ, ଏଇ ତରୁ ଲତା, ଏଇ ଫଳ ଫୁଲ, ଏଇ ବନ ପ୍ରାନ୍ତ, ସବୁଥିରେ, ସବୁଠାରେ ଯେମିତି ସେ ! ସେଇ ଦିଶୁଛନ୍ତି ମୋତେ । ପୋଡ଼ା ଆଖି ମେଲିଲେ କିନ୍ତୁ ବାହାରର ଶୂନ୍ୟଗୁଡ଼ିକ ! ନା-ନା-ମୁଦି ଦିଏଁ ! ମୁଦି ଦିଏଁ, ମୁଦିଦିଏଁ ଆଖି ମୋର ।

( ଝୁଙ୍କି ପଡ଼ି ନଆ ଯୋଡି ଦେଲେ )

( କିଛି ବେଳ ପରେ ଘରର ଲଳିତା ଓ ମଧୁ ପ୍ରବେଶ ହୋଇ ଏହା ଦେଖିଲେ-ଲଳିତା ମଧୁ ପ୍ରତି ଚାହାଁଇ, ସବୁ ବୁଝି, ଠିକ୍ କରିନେଲେ ଯେ ମଧୁ ଅନ୍ତରାଳରେ ରହିବେ । ମଧୁ ଗଲେ—ଲଳିତା ଗାଇଲେ )

( ୮ )

ନୂଆ ନଅ ପଇଲି ମୁଁଲିଟ ହେ, ନାହିଁକି ଶ୍ରୀଅଙ୍ଗ ସୁଖ ?
ନିପଟ ନିଷ୍ଠୁର ଦିଶୁଛିତ ଆଜ ହାରିଲିସ ଚନ୍ଦ୍ର ମୁଖ ।
ନୀଳୋତ୍ପଳ ବାସି ହେଲାପରି ଦିଶିଯାଉଛି ତୁଛି ଶ୍ରୀଅଙ୍ଗ
ନାଶା ନୀଳ ତିଳଫୁଲରୁ ଅନଳ ପ୍ରସରୁଛି ବେଗ ବେଗ ।୧।
ନିଦ ନାହିଁ କି ନୟନେ ନିଶିଦିନ ଅହା ! ମରଇ ମୋ ଧନ !
ନବନୀତ ତହୁଁ ମୃଦୁ ଦେହେ କାହୁଁ ସମ୍ଭବିଲା ଏ କଦନ ? ।୨।

ଶ୍ରୀକୃଷ୍ଣ—(ଚମକି ଗୁହିଁ) କିଏ ? ଲଳିତେ ?
ଲଳିତା—ହଁ, ଶ୍ୟାମ ! କହିବକି ଏ ଦଶା ଦେଲା ତମକୁ କିଏ ?

ଶ୍ରୀକୃଷ୍ଣ—କି ଦଣ୍ଡ ସଖି ? କିଛୁ ନାହିଁ ତ ।

ଲଳିତା—କିଛି ନାହିଁ ତ ? (ଗୃହିଁରହିଲେ) କେବେ ଦର୍ପଣରେ, ନୋହିଲେ ଯମୁନା ପାଣିରେ ତ ନିଜର ରୂପ ଦେଖିବଣି ଶ୍ୟାମ ! ଡେରେବେଳେ ମଧ୍ୟ କହୁଚ, ଡେରେବେଳେ ମଧ୍ୟ ତୁମର ସାହସ ହେଲା କାହ୍ନୁ ! କିଛୁ ନାହିଁତ ବୋଲି କହିବାକୁ ? ଯେ ଦେହ ଇନ୍ଦ୍ରନୀଳମଣିକୁ ଉପହାସ କରୁଥିଲା, ଆଜି ବାସି ନୀଳକଇଁ ପରି ଦିଶିଲାଣି—

( ମଧୁ ପ୍ରବେଶ )

ମଧୁ—ମ, ଆମେ ଗୋପ ସାରା ଖୋଜି ମରୁଁ, ଆଜ ଏଠି ଆସି ତୁମେ ତୁମର ଏକାଲାଟି ଶୋଇ ରହିଛ ? ପୁଣି ଧୂଳିରେ !

ଲଳିତା—ଆସ ଆସ, ବନ୍ଧୁ, ଦେଖିଲ ତ ?—ମୁଁ ବି ସେଇ କଥା କହିଲି । ସୁନା ଖିଅକେ ଦେହ ରହିଲାଣି ! ତାହିଁକି ?—ଭଲ ନ ଲାଗିଲେ ଗୋଠ ବୁଲି ଦୁଇ ଘୃରି ଦିନ ବନ୍ଦ ହଲେ ?

ମଧୁ—ହଁ ତ ମନ କଅଣ ?

ନୀପ ଉପବନ ନିକଟ ପବନ
ପରଶକୁ ଯେତେବ ଡର ?
ନଦୀ କୂଳ ସ୍ଥଳ ଏ ବଡ଼ ଶୀତଳ
ନୁହନ୍ତାହିକି ବହାର

( ସମସ୍ତେ ନୀରବ )

ମଧୁ—ତୁନି ହୋଇ କଅଣ ବହୁଲ ତ ? ଆଜ କଅଣ କାହା ଦୃଷ୍ଟି ପଡ଼ୁଛି ? ଲଳିତେ ?

ଲଳିତା—ଠକଜାଣି ! ଏକୁଟିଆ ଯୁଅତେ ପାର ସିଆଡ଼େ ମାଡ ଯିବେ ! ବଣ ଭିତର ଏ ! ଅସମ୍ଭବ କୋଉ କଥା ?

ମଧୁ—ଓଃ, ବୁଝିଲି, ବୁଝିଲି, ( ଭାବି ) ସେଇ ଦିନ ଆମର ଏଇ
ବରଜ ବଣକୁ ସବୁଗରୁ ମେଘେ ଗାଈଣୀ ଙ୍କୋକି ନାଁ ଅପର
ଛନା କ'ଣ ସେ ଗୁଡ଼ାଙ୍କୁ କହନ୍ତି—ଅସି ଫୁଲ ତୋଳୁଥିଲେ ।
ସଖୀ ! ଏତେବେଳକୁ ଠଉରାଇଲି, ହଁ ତାଙ୍କର ଆଖି ବାଣ ?
ମୋ ବୋପାଲୋ ! ସେଇ କାଣ୍ଡ ତ ବାଙ୍କ ସଖାଙ୍କ ଛାତି ଫୁଟାଇ
ଏ ବେଦନା ଦେଇଛି ! ସତେ ସଖୀ, ମୁଁ ଦେଖିଛି ପରା ! ତାଙ୍କ
ଆଖି ବାଣ ଯେତ ଗୋଳିଆ ! ମୁଁ ପରା ଠିକ୍ ତାଙ୍କ ହାବୁଡ଼େ
ପଡ଼ି ୨ ହେଉଥିଲି ! ବାଣ ବନ୍ଧ ଦେଲାବେଳକୁ ଅତରଛରେ
ସେ କଦମ୍ବ ମୂଳେ ଲୁଚିଗଲି କି ମୋ ତାରପରା ପ୍ରାଣ
ଥୋଡ଼ାଏ ଦିନ ବଞ୍ଚିଗଲା । ବୁଝିଲି ଲଳିତେ, କଥାଟା
ସେଇଆ । କହି ଦେଲେ ତ ଯାଆନ୍ତା; ହେଲେ ବୈଦ୍ୟ
ଦେଖାଇ ପଥି ପାଚନ କରାନ୍ତେ ନାହିଁ ?

ଶ୍ରୀକୃଷ୍ଣ—ଏ ସବୁ କିଛି ନୁହେଁ, ମୁଁ ସ୍ତ୍ରୀର କି ଉତ୍ତର ଦେବି ? ମୁଁ
ଭାବୁଥିଲି ଭିନ୍ନ କଥା । ଅଶ୍ଚର୍ଯ୍ୟ ହେଲି ସହି, ବାସ୍ତବିକ୍ ଯେ
ଯାହା ଗୃହେ, ତା ପାଏ ।

ଲଳିତା—ପାଏ, କେମିତି ?

ଶ୍ରୀକୃଷ୍ଣ—କେମିତି ?

( ଗ )

ଚୁହିଁ ଲୁହିଁ ତୋ ସରଣୀ        କବୁଲିକୁ ରେ ତରୁଣୀ
ଚନ୍ଦାପିତ ପର ଥିଲି ବସି,
ଚେନ ମଣିଲି ମୁଁ ତୋତେ        ଚୁହିଁ ଯା ଅତରକତେ
ଚୁରିଚକ୍ଷୁ ମିଶାଇଲୁ ଆସି ରେ, ଚଲାପାଇଁ !
ଚନ୍ଦ୍ରରୁ ଚପୁଡ଼ି ସୁଧାହର        ଚର ତୃଷିତର ମୁଖେ ଭରୁ
ଚୁରୁଯାଁ କୃପାକୁ ଗୁଣ —        ନଧି ! ରଖିଲୁକି ପ୍ରାଣ ?
ସେମନଲି ମୁଁ ଏତେ ସର କର ରେ । ୧ ।

ଚେତା ଅଳ୍ପଃ କିଛି ପ୍ରତୀତ ତ ହେଉଅଛି
ଶକଣ ତ ଦଶୁଛି ମା ଦେହ,
ଶକ୍ତି କି ଲଭ୍ଯିନ ସ ତ ଗୃମର ଶକ୍ତିର୍ ମୋତେ
ଚଦ୍ରକାଇ ପଗୃ କହ ଦେ, ଚଲାପାଙ୍ଗି !
ଚମ୍ପି ରବନନ୍ଦନାର ନୀର ଚନ୍ଦ୍ରକା ଚୟ୍ଯ ତୁଷାର ସାର
ଗୃହ୍ଣ ମନ୍ତ୍ରତରୁ ତରୁ — ତନ ଶୀତଳ ହେଉଛୁ,
ଶଗାଏ ତ ଖେଦ ନାହିଁ ମୋର ରେ । ୨ ।

ଲଳିତା—ଓହୋ, ମତେ ଚ ଖୋଜୁଥିଲ, କାହିଁକି ? ଥରେ ଆଉ ଆଖିରେ ଗୃହିଁବାକୁ ? ଛି, ଛି !

ମଧୁ—ଏ ସବୁ କଣ ସଖି ? ସଖା ? ମନରେ ତମର କଅଣ ଅଛି ? ଏଠି ବସି ଧସି ତପ କଲାପରି କଣ ଏମିତ କରୁଛ ଏକୁଟିଆ ?

ଲଳିତା—ତପ ! ତପ କରୁଛନ୍ତି ! ଠିକ୍ କହୁଚ । ଅଭ୍ୟାସ କରୁଛନ୍ତି—କେମିତ ହେଉଛ ନୟନରେ ଗୃହିଁବାକୁ ହୁଏ— ସାଙ୍ଗେ ସାଙ୍ଗେ କେହି ପହୁଞ୍ଚିଲେ କିପରି ଠକିବାକୁ ହୁଏ ।

ଶ୍ରୀକୃଷ୍ଣ—ନାଇଁତ ସଖି !

ଲଳିତା—ନାଇଁତ ସଖି ! ଧନ ଜନ ଗୃହ ତଳେ ମନେ ଅଛି ଶ୍ୟାମ ? ବ୍ରଜବାଟରେ ଝୁଣ୍ଟି ପଡ଼ିବାହା—ସତଟି ?

ମଧୁ—ଏଁ, ସେତ ହାଲ୍ କଥା— ସତ ନୁହେଁ ? ଯାଃ—

ଲଳିତା—ଯାଆ କି ଶାଶୁ ତମ ସଖାଙ୍କୁ ପଗୃର । କିନ୍ତୁ ଶ୍ୟାମ ସେ ସତ ନାଁ ମିଛ ?

ମଧୁ—ଯା, ବାବୁ ! ଏତେ ଗୋଳମାଳରେ ଆମର ପଶେ କିଏ ? କଥା ପଗୃରିଲେ ତ ପଦ୍ଧାବ ନାହିଁ । ଓ, ବୁଝିଲି, ବୁଝିଲି ।

ମୁଁ ଆସି ବୋଧେ ଅଡୁଆ କଲି ? ଯାଉଛୁ ନରେ ବାବୁ, ତମ ବିଶ୍ୱାସମୂର୍ତ୍ତି ହେଲେ ଫିଟୁ ! ଟିକିଏ ଦୂରେଇ ଯିବକି ସଖା ?

ଶ୍ରୀକୃଷ୍ଣ—(ଟାଣି ଆଣି) ନାଇଁ, ସେ ଗୋଟେ କଅଣ ? ଆସ, ଆସ ।

ମଧୁ—ଓଃ, ଓଃ, ମୋତେ ମରଣ ହେଉ, କି ସୁଆଗ ଲୋ ? କହୁନାଁ ତେବେ କଅଣ ହେଉଛୁ ।

ଲଳିତା—ବଟୁ, ବେଗ ଯାଇ ସେଠି—ବହୁତ ଦୂରରେ, ମୁଁ କ'ଣ ଭମ୍ ମଣିଛ କି ?

( ଛ )

ଛଳବାହୁନାଶ ହେ, ଘୁଞ୍ଚ ଏ ସାହସ ହେ । ୦ ।
ଛଡ଼ାଇ ଆବଳ ଦିଶେ ଛପିବାର ଅଛୁ କି ସେ
ଛଟା କାହା କଟାକ୍ଷର ଲୁଚୁଛି ହେଲା କି ବକ୍ଷର । ୧ ।
ଛେଲଲୁଚ ଚନ୍ଦ୍ରା ବଳ ଛାତିରେ ଗଲାଣି ଗଳି
ଲୁଟି ଯାଇ ବିବେଚନା—ଛଟପଟ ହେବ ସିନା । ୨ ।

ଶ୍ରୀକୃଷ୍ଣ—ଲଳିତେ ! ତୁମ୍ଭର ଏସବୁ କଥାର କ'ଣ ଉତ୍ତର ଦେବି ? ବୋଲି ତ ପାଉନାହିଁ ?

ମଧୁ—ପାଉନାହିଁ ? କଦମ୍ବ ଗଛର ସେ କୋରଡ଼ ଟା ଥରେ ଅଣ୍ଡାଳି ଦେଇ ଆସିବି କି ସଖା ?

ଶ୍ରୀକୃଷ୍ଣ—ଆରେ, ସେଠି କଅଣ ଅଛୁ ?

ମଧୁ—ଉତ୍ତର-ଜତ୍ତର । ତମର ତ ଗଛ ଚଢ଼ାଟା ଅଭ୍ୟାସ, ହାତେଲ ଭୁଲ୍‌ରେ ସେଠି ଗଳି ପଡ଼ିଥିବ !

ଶ୍ରୀକୃଷ୍ଣ—ଯାଃ—

ଲଳିତା—ଶ୍ୟାମ, ଏ ଭଳି ଭଙ୍ଗି ଘୁଞ୍ଚ, ଟିକିଏ ସରଳ ହୁଅ, ଛଳନା ରଖ, ମନରୁ ଏ ଛଳନା ଦୂରକରି ସତ କଥାଟା କହ ।

ମଧୁ—

(ଗୀତ)

ମୋହନ ନଫିଟିଲେ ନିଜ ମୁଖ
ଆନକି ବୁଝିବ ମରମ କାହାଣି, ଘୁଞ୍ଚ ଢକି ମନ ଦୁଃଖ ?

ଲାଜ ଯେବେ ଧନ, ଲାଗଇ ଶ୍ରୀମୁଖେ, ଭାଷିବାକୁ ମନ କଥା
ଆଖି ଠାର ଧୀରେ, ଲଳିତା ଅଖିରେ ମିଶାଅ ହଲାଇ ମଥା ।୧।

ଫିରିକି ବାହାର ଦୁଟର ଅପସର ମୋତେ ଯେବେ ଲଗୁ ଚୋର
ନୟନ କୋଣରେ କହିଦିଅ ଥରେ ଲଳିତା ବୁଝିବେ ସବ ।୨।

ଲଳିତା—ବୁଝିବି କଅଣ ମୁଁ ? ପଚାରିଲେ ତ ଜବାବ ନାହିଁ । ମୋତେ ଲୁଚାଉଛ ? ମୋ ଆଖିରେ ଲୁଚି ନାହିଁ ସେକଥା ? ଖଞ୍ଜରେ ଖଞ୍ଜରେ ତୁମେ କି ସେଇଠା ନଜର କର ନାହିଁ ? ମୁଁ ତମକୁ ଚାହିଁ ଯିବାଠା ଜାଣି ପାରନାହିଁ ? ମୋତେ ସତ କହିଲ ! ବଂଶୀ ତୁଇଁ ସତ କହିଲ ! ଏତକ ଜାଣି ନାହିଁ ?

ଶ୍ରୀକୃଷ୍ଣ —

( ଜ )

ଜାଣିଛୁ ମୁଁ ଏତେ      ମାନ ଗୋ ଲଳିତେ
ଯାହା ଇଚ୍ଛା ତୋର ତାହା କର
ଜ୍ୱଳନରୁ ବଳି      ସେହି ଧନୁ କେଳି—
କରେ ବିଭାବସୀ-ନାହାକର ।ପଦ ।

ଜଣେକେତେ ବ୍ରଜ-      ଶିଶୁ ଥିଲେ ନିଜ-
ପୁରୁ ଆସୁଥିଲ ଖେଳାଇ ସମଜ
ଜମ୍ବାଗତ ମଣି      ଗିରନ୍ଦ୍ରକୁ ଜିଣି-
ବାରପୁରେର ହେଲ ମୋ ନଜର ।୧ ।

ଜହରକୁ ଗୋଳି      ଦେଲପରି ଗିଳି
ମୋହର ଦେହରେ ପୀତାଗନ୍ଧ ବଳି

ଶୀତନାଶା ହେଲା ଯାଉଅଛୁ ଜଳ
ପାରୁନାହିଁ ମୁଁ ମୋ ହୃଦନ୍ତର । ୨ ।

ଲଳିତା—କେଉଁ ଦେଶ—ତା' ପର ?

ଶ୍ରୀକୃଷ୍ଣ—ଆଉ ତ କହୁନାହିଁ ସହି । ଇନ୍ଦ୍ର ନୀଳମଣି ପଥରର କେମିତି କୋଠା ଉପରେ, ଝରକା ଭିତରେ କାହାର ଗୋଟିଏ ସୁନା ପ୍ରତିମା ବିଜୁଳି ଖେଳିଲା ପରି ଉଙ୍କିଅସି ଉଭେଇ ଗଲା । ଆଖିମୋର ସେତିକି ମାତ୍ର ଦେଖିଛୁ, ସେତିକି ମାତ୍ର ।

ଲଳିତା—ହୁଁ, ସେତିକି ମାତ୍ର ? ପୁଣି ମିଛ ? ପୁଣି ଲୁଗୁଉଛ ? କେଉଁ ତା' ପର ଯମୁନା କୂଳେ ? ସଞ୍ଜବେଳେ ? ଏମିତି ଭାବରେ କୁଳରମଣୀଙ୍କୁ ଆଖି ପକାଇବାଟା ?

ମଧୁ—ମ, ଏତେ ଗଭୀରତେ ଗୃହ ?

ଲଳିତା—ଆଉ ? ରସିକ ଜମତ ନୁହନ୍ତି ଯେ—

ଶ୍ରୀକୃଷ୍ଣ—ନାହିଁ ସହି, ସେଇ ବିଜୁଳି ପ୍ରତିମାଟି ତୁମ୍ଭମାନଙ୍କ ଗହଳରେ ଥିବା ଅନୁମାନ କରି ଗୃହିଁଥିଲି ମାତ୍ର । ଅନ୍ୟ କାହାର ପ୍ରତି ଦୃଷ୍ଟି ପକାଇବା ମୋର ଉଦ୍ଦେଶ୍ୟ ନୁହେଁ ।

ଲଳିତା—ନାଁ, ସେ ତ ସତ, କହୁଛ ତ ବିଜୁଳି ପ୍ରତିମା, କେମିତି ବୁଝିଲ ସେଇଟି ଆମ ଗହଳରେ ଥିବାଟା ? ଆଉ କୋଉ ବିଜୁଳିଟିକୁ ବା ତୁମେ ଦେଖିଥିଲ ? ତା ଅବା ଚହିଲ କପରି ? ସେ କୋଠା ଉପରେ ତ କେତେ ବିଜୁଳି ଖେଳେ । ଅଚ୍ଛା, କହଦେଖି, କଅଣ ଠଉରେଇଲ ? ସେଇଟି ତମ ଚହ୍ନା ବିଜୁଳି ନାଁ ?

ଶ୍ରୀକୃଷ୍ଣ—( ନୀରବ )

ଲଳିତା—କଉ ? ତୁନିହେଲ ଯେ !

ମଧୁ—"ମୌନଂ ——ହୁଁ" ଇତି ।

ଲଳିତା—କଣ ? ବନ୍ଧୁ ଯାହା କହୁଲେ ତା ଯେବେ ସତ, ବିଜୁଳି ଝଟକ ତ ଆଖିରେ ପଡ଼ିଲେ ଆଖି ମୁଦହୋଇ ଯାଏ ! ତାହି ତାକୁ ଡର ଥାଏ କୋଉଠି ?

ମଧୁ—ସତେ, ମୁଁ ପରା ଆଖିମୁଦା ଏକାବେଳେ ଘଡ଼ିଏ ଲେଖେଁ ମାଆ କୋଳରେ ମୁହଁ ଲୁଚାଇ ଦିଏଁ, ଡର ସଣ ।

ଲଳିତା—ଆଜ୍ ଏ କେମିତି ଚାହିଁଲ ସେଇ ବିଜୁଳି ସେ ! ଆମ ସାଙ୍ଗରେ ଯେ ଥିଲ । ସତ ଆଜ୍ ଜଣେ—

ଗୀତ

ସେ ଯେ ଗୁଆଳ ରତନ     ପଦ-କଞ୍ଜ ଚନ୍ଦ୍ରଅଳି ଶରଣ
କଳାକାହ୍ନୁଚନ୍ଦ୍ର—ଚାହିଁଲକି ସେହୁ ଜନ ?
କର ନଲଗାଇ ବିଧି     ମାନସେ ଗଢ଼ିଛନ୍ତି ସେରୂପ ନିଧି
କଳାକାହ୍ନୁଚନ୍ଦ୍ରେ—ହଜିବ ଶେଖର ବୁଦ୍ଧି ।
କଳଙ୍କ ନଥିବା ଶଶି     ଗୋଟିଏ ହୋଇଲେ କୋଟିଏ ମିଶି
କଳାକାହ୍ନୁଚନ୍ଦ୍ର—ଗ୍ଲାଇସର ଯିବ ଦଶି ।
ବିଜୁଳି ହାରେ ଝଟକ     ତାସର ଖୋଜିଲେ ବ୍ରଜକଟକ
କଳାକାହ୍ନୁଚନ୍ଦ୍ର—ସେହ୍ନୁ ଏକା ସମ ଲେଖ ।
ଶ୍ରୀମୁଖ ବାସ ସୁମର     ନିଶିରେ ଭ୍ରମେ ଆସଇ ଅଳି
କଳାକାହ୍ନୁଚନ୍ଦ୍ର—ଚାହିଁଲକି ସେହୁ ବୋଲି ?
ଭେଟିଲକି ତାକୁ ସତେ     ନଆସଇ ମୋର ମନେ ପରତେ
କଳାକାହ୍ନୁଚନ୍ଦ୍ର—କୋଟି କଳପ ବରତେ ।

(ଗାଇ ଗାଇ ଲଳିତା ଗୁଳିଗଲେ ଓ ଲଳିତାଙ୍କ ଗୀତ ଶୁଣୁ ଶୁଣୁ ଶ୍ରୀକୃଷ୍ଣଙ୍କର ଭାବୋଦୟ ଓ ଲଳିତାଙ୍କ ପଛେ ପଛେ ଯିବା ଉଦ୍ୟମରେ ପଡ଼ିଯିବା ଭଳି ହେଲାରୁ ମଧୁ ସମ୍ଭାଳି ନେଇ ପାଇଲେ

( ଝ )

ଝଗଡ଼ି ମାନ ହେଲ ହେ ଶ୍ୟାମ
ଝିମୁଚ୍ଚ ହେବାକୁ ସହସ୍ର ଯାମ ।୦।
ଝାଉଁଳିବା ନବ ତମାଳ ରମା
ଝିଙ୍କି ଅଣି ଅଙ୍ଗେ ବଳଣି ଯମା ।୧।
ଝଉବ ବଳ କୋମଳ ଛାତିରୁ
ଝସଧ୍ୱଜ ପୀଡ଼ା ଝାଞ୍ଜି ଛାତିରୁ ।୨।
ଝୁମି ଝୁମି ଲୁଠି ପ୍ରକ୍ଟେ ରସାର
ଝୁରିବାର ଏକା ହୋଇବ ସାର ।୩।

---

# ୨ୟ ଅଙ୍କ ।

## -ପ୍ରଥମ ଦୃଶ୍ୟ-

( ମଧୁ ଖୋଜିବା ପଛେ ଅସିଲେ )

ମଧୁ— ଗୀତ ।

ମୋତେ କେ ମନ ଚମକେ
ମୁରଲୀ ଡାକେ, ଡାକେ ସ୍ୱପନେ ।
କୁହୁକ ପରଶ ଯାକ ମୋର ବାଳକ ହେଲ୍ପ ସପନେ । ୦ ।
ଭାମିନୀ କମ ନୟନ କଜ୍ଜ୍ୱଳ ଶଙ୍କା ବରନ ଅଙ୍ଗ
କିଏସେ କଳା ଜଣକ କଳାମାଣିକ କି ଯାଦୁ ଯାଣେ । ୧ ।
ଏକାକୀ ନିରଜନେ ସେ ଭରି ଅଳସେ ବସେ କାହିଁକି ?
ଅକାଶେ ଗ୍ରହି ଚମକେ ମୁରଲୀ ଫୁଙ୍କେ ନୀର ନୟନେ । ୨ ।



ଶ୍ରୀକୃଷ୍ଣ — ( ପଛରୁ ) ସଖା !

ମଧୁ — ( ଦୌଡିଯାଇ କୁଣ୍ଢାଇ ) କଅଣ ସଖା ? ( ଧୂଳି ପୋଛୁ ) କୁଆଡ଼େ ଏତେବେଳଯାଏ କୋଉଠି ଖରାରେ ବୁଲୁଥିଲ ? ଦେହରୁ ମୁଣ୍ଡରୁ ଝାଳ ବୋହି ଯାଉଛି । ମୁହଁଟି ଶୁଖି-ଯାଇଛି, ଆହା ମା ଯଶୋଦା ଯଦିକୁ ଦେଖିଲେ ତାଙ୍କ ପ୍ରାଣ ସହିବଟିକି ?

ଶ୍ରୀକୃଷ୍ଣ — ( ନୀରବ )

ମଧୁ — କାହ୍ନୁ ତୁମେ ଟିକିଏ ଯେବେ ହସିବ ଆଗପର, ତମକୁ ଗୋଟିଏ ଶୁଭ ଖବର ଦେବି । କାହିଁ ? ହସିଲ ଦେଖି —

ଶ୍ରୀକୃଷ୍ଣ — (ନୀରବ)

ମଧୁ — ହସିଲ ନାହିଁ ? ତେବେ — (ଦୂରେଇ ଯିବା)

ଶ୍ରୀକୃଷ୍ଣ — ନାଇଁ ସଖା, ହସିବ ନାହିଁ କାହିଁକି ? ଏଇତ ହସୁଛି —

ମଧୁ — କାହ୍ନୁ ! କାହାକୁ ଠକୁଅଛ ? କାହାକୁ ଦେଖାଉଛ ? ଏଇ ସେଇ ହସ ତୁମର ?

( ଗୀତ )

ଏ ହସ ଛଳିଛି ତୋର ପ୍ରାଣ କାନ୍ଦାଇରେ
ନିଶି ଶେଷେ କୁଆ ତାର — ସବୁ ଦଶେ ହସ ତୋରା
ନାହିଁ ଲେଶ ମଧୁ ଧାର ଖୋଜିଲେ କାହିଁରେ ।
ହୃଦର କମଳ ବନ ତୋର ଏ ହସ ସମାନ
ସକାଳ ସେଫାଳି ସମ ମୋତେ ଦଶଇରେ ।



ଶ୍ରୀକୃଷ୍ଣ — ବନ୍ଧୁ —

ମଧୁ — ତେବେ ଥାଉ, ଗୀତଟା ମୋର ଥାଉ ଏତିକିରେ, ଶୁଣ, ଲଳିତା ଏଇ ବାଟେ ଆସୁଥିଲେ, ମୁଁ ଆଗରୁ ସୁରକ୍ ବୁଝି

ଆସିଛୁ । ତୁମେ ଟିକିଏ ଶୋଇରହ ଦେଖ କଷ୍ଟଣ ହେଲା-
ପରି ଯେ ସେକଥାଟାତ ତମକୁ ଶିଖାଇବାକୁ ହେବ ନାହିଁ;
ତା ପରେ ଯାହା କରିବାକୁ ହେବ କରିପିବ । ତନ୍ ଶୁଅ ।
ଲଳିତାକୁ ନ ଧରିଲେ କାମଟା ହାସଲ ହେବନାହିଁ
ସହଜେ । ଶୁଅ – ଆସ – ( କୃଷ୍ଣ ମଧୁଙ୍କ କୋଳରେ ମଥା
ରଖି ଶୋଇଲେ ଓ ମଧୁ ଗୋଟିଏ ପଦ୍ମ ଆଣି ବିଞ୍ଚିବସିଲେ)
ହାଁ, ଠିକ୍ ହେଲା । ଦେଖ ସଖା ! ଏଥର କଥାଟା ତାଠାରୁ
ଖୋଲ ତାଡ଼ ବାହାର ନ କର ଅଉ ତାକୁ ଯେମିତ ନ
ଛାଡ଼ ।

(ଲଳିତା ହାତରେ ଫୁଲଡାଲା ଧରି ଅନନ୍ଦରେ ଗାଇ ଗାଇ
ପ୍ରବେଶ, ଶ୍ରୀକୃଷ୍ଣଙ୍କ ଉପରେ ତାଙ୍କର ନଜର ନାହିଁ )

ଲଳିତା – ଗୀତ

ପଡ଼ିଛୁ ଫାନ୍ଦେ ଏତେ ଦିନେ ନାଗର
ଦେଖି ବଞ୍ଚ କେତେ ସେ କଳା ନାଗର ।୦।
ଜଣେ କେ, ବସି ତେଣେ ବିରହ ପଦ୍ମ ତୋଳା
ପଡ଼ଇ ଅନ୍ତରେ ଆକୁଳ ନୀରଭର
ରୋଧୁଛୁ ନାଗ ଗତ ବାନ୍ଧୁଛୁ ଚଳ ମତ
ଆସିବ ଲଙ୍ଘି ସେ ଭୀଷଣ ସାଗର ॥



ମଧୁ —[ଯୋରରେ] ବା, ବା, ବା,
ଲଳିତା— [ଚମକି] କିଏ ?
ମଧୁ —କେହି ନୁହେଁ – ଅମେ-
ଲଳିତା – କିଏ ହୋ ତୁମେ ? ବଡ଼ ଯୋର କଥାତ –
ମଧୁ —କି ? ମାଲିକ ଆମେ, ତମ ପରି ଚୋରଙ୍କ ?

ଲଳିତା— ଆମେ ଚୋର ? -ନା- ?

ମଧୁ —ଚୋର ନୁହେଁ ଯେ ଚୋରଣୀ- ଛାଡ଼ ସେକଥା । ଯାହା କଲ, କଲ, ତୁମ୍ଭେ ଶୁଣ—ଜାଣିଥ ଏ ବୃନ୍ଦାବନର ଯୁବରାଜ କହ୍ନାଇ—ଶ୍ରୀଅଙ୍ଗ ତାଙ୍କର ଅସୁସ୍ଥ,- କବିରାଜ ବତାଇଛନ୍ତି ତାଙ୍କଠି ଯେମିତ ମାଇପି ଛାଇ ନ ପଡ଼େ— ଯାଅ ବାଟ ଦେଖ—ଏଣିକି ପାହୁଣ୍ଡେ ନଚଳ ଯେମିତ—

ଲଳିତା—ଓଃ, ଡର ଯିବାଟି —

ମଧୁ—ଛାନିଆଁ ପଶିବଣି କି ନାହିଁ-ଖବର ନିଅ ଆଗେ, ଯାଅ—

ଲଳିତା—ବୃନ୍ଦାବନର ରାଜା କିଏ ହେ ବଟୁ ?

ମଧୁ—କାହ୍ନୁ ବୋଲି ନ ଜାଣେ କିଏ ଏକଥା ଯେ—ଫଟେଇ-ହେଇ ପଚାରୁଛ ମୋତେ ? ଆଉ ଥରେ କହୁଛି ତେବେ ରାଜା କଳାକାହ୍ନୁ ॥

ଲଳିତା—ମିଛକଥା—ବୃନ୍ଦାବନର ଈଶ୍ୱରୀ ଆମ ସଖୀ ଶ୍ରୀମତୀ ।

ମଧୁ—ଏଁ ? ସେ ପୁଣି କିଏ ? ଯନ୍ତ୍ରୁ କେମିତକା ?

ଲଳିତା—ମଧୁ ! ମୁହଁ ଜଗି କଥା କହ ।

ମଧୁ—ଚୁ, ଚୁ, ନନା—ଯାହା ମହଗଲେ-ଏଇତକ ଶିଖେଇ ଯାଇ ପାରିଲେ ନାହିଁ !—ଗଉଡ଼େ ଗୋରୁ ଜଗନ୍ତି,-ମୁହଁ ଜଗାଟାତ ଜାଣିନାହିଁ- ତା' କଅଣ ଗଉଡ଼ୁଣୀଙ୍କଠୁ ଶିଖା' ଯାଏ ? ଲଳିତେ ! ଜାଣିନାହିଁ—ଚିହ୍ନି ନାହିଁ ଯାହାଙ୍କୁ, ତାଙ୍କ ପରିଚୟ ପଚାରିଲି—ଏଥିରେ ମୁହଁ ଜଗିବ ? କାହିଁକି କହଦେଲେ ତ' ସରିଯିବ—କିଏସେ ସେ ? କଅଣ ସେ ? କାହାର ସେ ? ଟୋପେ ମହତ୍ତ୍ୱ ତମର ନାହିଁ ?

ଲଳିତା—ଓହୋ ! ଟୋପେ—କି ବୁଦ୍ଧେ, ମୋତେ ଜଣା ନାହିଁ— ତୁମେ ନିଜେ ଯା, ବୁଝ—କିଏସେ ସେ—କେଉଁଠି ସେ

ନୋହିଲେ ତମ ବନ ରଜାଙ୍କୁ କହ, ଆଜଥରେ ଯମୁନା-
କୂଳରେ ତଙ୍ଗାବାନ୍ଧ, ପର ରମଣୀଙ୍କୁ ଗୁହିଁ — ମହଜ୍ଜ
ଶିଖାନ୍ତୁ ।—ଆ ହା ହା, ପଗୃରୁଚ ? ମୁଁ ଆଜ ବେହି-
ନୁହେଁ, ଲଳିତା । ଜାଣିଛତ ବନ୍ଧୁ ?

ମଧୁ—ଜାଣେ ବୋଲିତ ଏତକ । ନହେଲେ—ଅଚ୍ଛା ! ଏଇତ
ସବୁ କହି ଗଲ ସହି, ଆଜ ଏତେତ ଭିଡ ମୋଡ ହଜ ଥିଲ
ତାହାଁଙ୍କ ?

ଲଳିତା— କଅଣ କହିଲ ?

ମଧୁ— କଅଣ ନାକହିଲ ? ଜଣାଗଲା ତମ କଥାରୁ – ଯମୁନାକୂଳରେ
ସଖୀଙ୍କର ସେଦନର--ଦେଖା ଛବ—ତାଙ୍କର ତେବେ ।
ବୁଝା ଗଲା ସବୁ । ବାକି – ଠିକକ ସମ୍ବାଦ ପାଇଁ —

ଲଳିତା – ଓଃ, – ଏତେ କଥା ଏଇଥିକ ? ବେଶ, ବେଶ, ଶିଆ-
ଣିଆ – ପଣ୍ଡିତ ରଖ । ମୁଁ ଯାଏଁ, ତେଣେ –

(ଲଳିତା ଗୃଲ ଯିବା ବେଳେ ମଧୁ ଶ୍ରୀକୃଷ୍ଣଙ୍କୁ ଠିପି ଠାରୁ
ଉଠାଇ ଦେଲେ ଓ ଶ୍ରୀକୃଷ୍ଣ ଯାଇ ଲଳିତାଙ୍କ କରଧରି ଗାଇଲେ )

[ ଡ଼ ]

ନ ଭଙ୍ଗରେ ସୁଭଙ୍ଗି ଭାରତୀ ତୁଅ ସାହା
ନୋହିଲେ ତୁ ପଚ୍ଚାଣ    ନିର୍ଦ୍ଦୟ ଅତନୁ ବାଣ
ନିଃଶେଷ କରନ୍ତି ଦେହ ଦାହା । ୧ ।

ମୀଠ କୁଞ୍ଜ ଉପ କଣ୍ଠେ    ନ୍ୟସ୍ତ କରିଅ ମୋ କଣ୍ଠେ
ନାଗସ୍ୱନ୍ଦ୍ର ନିରୁପମ ବାହା । ୨ ।

କେଶବାନ୍ତ ବିଳାସ ଯାର    ନିଦାନ ଏ ଅବସ୍ଥାର
ନିରେଖି ଉଚ୍ଛାରୁ ଥରେ ଆହା । ୩ ।



ଲଳିତା – ଶ୍ୟାମ ବନ୍ଧୁ !- ନିର୍ଲ୍ଲଜ୍ଜ ପଣିଆର ତ ପୁଣି ସୀମା ଅଛି ?

ମଧୁ – ହଁ, ନାହିଁ କିଅଣ ? ଏଇଠୁଁ ଯମୁନା କୂଳ ଯାଏ ତେଙ୍ଗା, ଅଧିକ ଗଲେ ଗୋଡ଼ ଖଣ୍ଡା ମାରିବ !

ଲଳିତା – ତୁନି ହେଲ ବଟୁ ! ପରିହାସ, ସବୁବେଳେ ଭଲ ଲାଗେ ନାହିଁ ।

ଶ୍ରୀକୃଷ୍ଣ – ଲଳିତେ ! ପରିହାସ ତ ସେ କରୁ ନାହାନ୍ତି; ପ୍ରାର୍ଥୀଙ୍କୁ ସନ୍ଦୁଷ୍ଟ ନ ଦେବା ତ କି ପରିହାସ ନୁହେଁ ?

ଲଳିତା – କାହା କଥା କହୁଛ ? ମୁଁ ତ କିଛି ବୁଝିପାରୁ ନାହିଁ ଶ୍ୟାମ ?

ମଧୁ – କାହା କଥା ବୋଲି ଫେର୍ ପଚାରୁଛ ସଖୀ ? ଯାହାଙ୍କ କଥା ଯାହାଙ୍କ ନା – କହିଲ ତୁମେ-ମୋତେ –

ଲଳିତା – କାହ୍ନୁ ! ମଧୁ ଯାହା କହିଲେ, ଯେବେ ତା ସତ – ତୁମେ କିମିତି ଜାଣିଲ- ସେହି ସେ ବୋଲି ?

ଶ୍ରୀକୃଷ୍ଣ – ସଖି ! – ପ୍ରମାଣ ତା'ର ଏଇ ହୃଦୟ ମୋର । ମନଠାରୁ – ବଡ଼ ପ୍ରମାଣ କିଏ ଦେବ ଆଜ ? ସେ ସବୁ ଛାଡ଼ ସଖି- ମୁଁ ଜାଣେ ସେହିସେ, ଆଉ ବେଶୀ ଭଲ କରି ଜାଣେ – ତୁମ ଛଡ଼ା, ତୁମ ଉପଦେଶ ବିନା, ଏ ଦୁଃଖ ସାଗରରୁ ପାର ହେବାର ମୋର-ନାଉସି ନାହିଁ ।

ମଧୁ—ଖାଲି ସେତିକି ନୁହେଁ—ନାଆ ବି ନାହିଁ । ସଖି ! – ସଖି ! ସଖି ଗୋ !!- ବନ୍ଧୁଙ୍କୁ ଅମର ଯନ୍ତ୍ରା ପର ବୋଲି ବିଗୁର କର ନାହିଁ !!

ଶ୍ରୀକୃଷ୍ଣ—ଲଳିତେ ମନେ ମନେ ଯେ ସୁଖସୌଧରେ ଆରୋହଣ- କରି ଖେଳିବାକୁ ସାହସ କରିଛି-ତୁମେ ଏକା ସେ ଆଶାର ପାଚିଛ, ସଖି ! ନିରାଶ କର ନାହିଁ ।

ଲଳିତା—ଶ୍ୟାମ ! ଏଗୁଡ଼ାକ କି ଅସମ୍ଭବ ଅନ୍ୟାୟ୍ୟ କଥା କହୁଛ ତୁମେ ?

[ ଟ ]

ଟାଣ ପଣ କର ସାର, ହେ ମୋହନ
ଟିକାଏ ମଦନ କଦନକୁ ସହ ସଦନ କୁ ବଢେଇକର । ୦ ।
ଟଙ୍କାରେ କି ଶରସନ୍ଧ ବାସବ, କୋଦଣ୍ଡରୁ ଚଣ୍ଡ ଧନୁ
ଟାଣି ବନ୍ଧେ ଶମ୍ବ ସଦୃଶ କଳମ୍ବ ତୁମ୍ଭଙ୍କୁ ଏକା ଅତନୁ । ୧ ।
ଟେକି ଏ ସୁନ୍ଦର ଶ୍ରୀମୁଖଟି ସର ଘରବୁଡ଼ା ଫର ମାସ
ଟିକାଏ ହେଲେ ଯେ ହୃଦୟ ସହେଜେ ନ ହେଲା ହାସ ବିଳାସ । ୨ ।
ଟେକା ଟେକି ମୋତେ କର ନାନାମତେ ତୁମ୍ଭ କାମନା ପୂରିବ
ଟାଣ ଖୁଣ୍ଟା ଗୁରୁଜନ ଗଞ୍ଜଣାରୁ ମୋ ପ୍ରାଣ ସାଥୀ ସରିବ । ୩ ।



ଶ୍ରୀକୃଷ୍ଣ—ଲଳିତେ ! ମିଛରେ ମୋତେ କଲବଲ କର ଭଲ କି ଲାଭ ତୁମ୍ଭର ?

ଲଳିତା—କାହ୍ନୁ ! ଏଗୋପ ପୁରରେ, ଯୁବତୀ ମତି ଚୋର ଯେତେ ରସିକ ଅଛନ୍ତି, କନ୍ଦର୍ପ ତାଙ୍କର ସପକ୍ଷରେ ଥାଇ, କେବଳ କୁସୁମ ଶର ମାରେ—ଆଜ ତମକୁ କଅଣ ସବଳ ଦେଖି, ବାଦକରି, ବଜ୍ରଶର ବନ୍ଧେ ?

ମଧୁ—ତମକୁ ଆଉ କେତେ କହିବୁଁ ଲଳିତେ ? ଯୋଉ ଶର ନାହିଁ ଦେଖୁଛତ, ସଖା ଏକାବେଳକେ ଅଧୀର ହୋଇ ପଡ଼ିଲେଣି; ଏତେବେଳେ ଉପକାରୀ ବନ୍ଧୁ କରେ କଅଣ ? ଉପାୟ ସିନା ବତାଇ ଦିଏ ? ଫିଙ୍ଗା, ଫୋପଡ଼ା କର ଗୁଡ଼ାଏ କହୁଛ ଯେ—କିଛି, ଲାଭ ହେବ ଭଲ ? ଆଗ୍ଯ, କହନା

ଦେଖିଂ ସଖୀଙ୍କୁ ତ, ଅମର ବଜ୍ର ମାରିଲା—ତୁମର ସେ ସୁନା ପିତୁଳାଟି ଇନ୍ଦ୍ର ନୀଳମଣି ଦ୍ୱାଦଶ ଉପରେ, ବୋଇଲ ଛେରଛ ଶର ହାଣିଲେ କାହିଁକି? ଦେଖୁଛତ, ସଖୀଙ୍କର ଅମର କିଶୋର ବୟସ ।

ଲଳିତା—ଓହୋ ! ଏ ବ୍ରଜର କିଶୋର ମାନେ କଅଣ କୋଠା—ମାନଙ୍କ ଉପରେ, କେତେ ସୁନା ପିତୁଳା ଦେଖୁ ନାହାନ୍ତି? ଏଥିକି ସଖୀଙ୍କୁ ତମର ଏତେ ବାଧି ଗଲା କାହିଁକି ?

ମଧୁ—ତା ନୋହିଲେ, ବ୍ରଜର ସ୍ଥିର ଗୋପୀକା ଗୁଣଙ୍କୁ, ଏତେ—ଖୁସାମତ କରନ୍ତା କିଏ? ବେଳପଡ଼ୁଛି ବୋଲି ତମମାନଙ୍କୁ ଠେକା ଠେକି ନକଲେ ଚଳୁ ନାହିଁ । ତା ନୋହିଲେ ହୁଁ ଃ ।

ଲଳିତା—କିଏ କହୁଛି ତମକୁ ଠେକା ଠେକି କରି କହ ବୋଲି ଯେ?

ମଧୁ—କହିଲି ପରା ବେଳ ପଡ଼ୁଛି ।

ଲଳିତା—ଅକାରଣ ଝାଟରେ ବାଟରେ ସ୍ତ୍ରୀ ଲୋକମାନଙ୍କୁ ଏତେ ଝାଉଁଲି କରି ପଥ ଓଗାଳିବାଟା କଅଣ ଭଲ କଥା ? ତୁମେ ଗଲ ଏଠୁ ! ନୋହିଲେ ନନ୍ଦ ଜାଣିବେ, ମୁଁ ଯାଏଁ ।

( ପ୍ରସ୍ଥାନୋଦ୍ୟତ )

ଶ୍ରୀକୃଷ୍ଣ—(କାମୋଧରି) ( ୦ )

ଠିକ ଠ ବର୍ତ୍ତୁଳ ଚନ୍ଦ୍ରାନନା ଚୋ ଶଶୁରେ । ° ।

ଠକସ୍ଥିତ ନଅଚରି ମୋ ବଦନକୁ ବଶୁରି
ଅକପଟ ହାଣ ବଧି ଉଚିତ ରେ । ୧ ।

ଠଣା ଠୁଙ୍କି ତାପହାସ ମୃଣ୍ଡେ ମନମଥ ପାଶ
ବନ୍ଧନ କରନ୍ତୁ ପରା ମୋଶଣ୍ଡ ରେ । ୨ ।

ଠଉରାଇ ଅବସର କଲେତୁ ପ୍ରସଙ୍ଗ ମୋର
ଯିବ ସଜୀବ ନେହାକୁ ଜୁଗତ ରେ । ୩ ।



ଲଳିତା—ଶ୍ୟାମ, ଏତେ କଥାରେ ମଧ୍ୟ ତୁମେ ଜାଣିଲ ନାହିଁ
ଛ, କଅଣ ଆଉ କହିବ ?

ମଧୁ—କଅଣ ଭଲ ନ କହିଲ ? ସଖି, ଲଳିତେ ! ତୁମେ ମୁହଁରେ
ତ ବଡ଼ ଟାଣଟାଣ କରି କହୁଛ, ତାଙ୍କ ମନରେ ତୁମର
ସେମିତି ଅଛି ନାଁ ? ସତ କହିଲ, ମୋତେ ତ କାହିଁକି
କିମିତି କିମିତି ଲାଗୁଛି ।

ଲଳିତା—ମଧୁମଙ୍ଗଳ ! ମନ, ମୁହଁ—ଆମର ଦିଟା ନୁହେଁ । ଶ୍ୟାମଙ୍କ
ପାଖରେ ରହି, ତମଠି ସେଇ ପବନ ବାଜିଲାଣି । ନୋହିଲେ
ମନରେ ସନ୍ଦେହ ଲାଗନ୍ତା କାହିଁକି ?

ଶ୍ରୀକୃଷ୍ଣ—ପବନ ବାଜି, ଯଦି ଲୋକର ପ୍ରକୃତି ଭଲ ମନ୍ଦ ହୁଏ,
ତେବେ କାହିଁ ? ତମର ତ ସେ କଥାଟି ହେଲା ନାହିଁ
କାହିଁକି ? ପ୍ରିୟବାଦିନୀ, ମୃଗନୟନା ଶ୍ରୀମତୀଙ୍କ ସହଚରୀ
ଲଳିତା—ସେ ନିଶ୍ଚୟ ଚତୁରୀ ହେବେ । ଶ୍ରୀମତୀଙ୍କ ପବନ
ଲାଗି, ପରୋପକାରିଣୀ ସେ ନିଶ୍ଚୟ । ତାଙ୍କର ପର ଦୁଃଖ
ଦେଖି, ମନ ଟିକିଏ ହେଲେ ଟଳୁ ନାହିଁ ?

ମଧୁ—ସଖି ! ଆକୃତି ଅନୁସାରେ ଲୋକର ଆଚରଣ ହୁଏ, ଏକଥା
ଋଷିମାନେ କହି ଯାଇଅଛନ୍ତି । ତମର ଏ ସୁନ୍ଦର ରୂପରେ
ଦୟା କଅଣ ଟୋପାଏ ହୋଇ ମିଶିନାହିଁ ? ସନ୍ଦେହ
ଏଥିରେ ଭଲ କାହାର ନ ଆସିବ କହିଲ ?

ଶ୍ରୀକୃଷ୍ଣ—ଏତେକ ଦୟାବତୀ ଶ୍ରୀମତୀଙ୍କର ସହଚରୀ,—ତହିଁ ଉପରେ
ନିଜର ଆକୃତି ଯାହା ଫୁଟାଇ ଦେଉଛନ୍ତି ଲଳିତେ !
ସେଥିରେ ତମ ମୁହଁରେ ଏ କଠୋର ବ୍ୟବହାର ମାନୁଛି
ଠିକ ? ଛଳେ ହେଲେ ହୃଦୟରେ ଦୟା ନାହିଁ ?

ଲଳିତା—ଆହା, ହା, ପଚାରୁଛ ? କି ସୁନ୍ଦର କଥାରେ ଦୟାବତୀ ବୋଲାଇବାକୁ ଉପଦେଶ ଦେଉଛ କାହ୍ନୁ ? ଏକଥା ଫିଟିଲେ, ବ୍ରଜରେ ଆଉ ମୁହଁଟେକି ବାଟ ଚାଲିବଟି ? ଶ୍ରୀମତୀଙ୍କ ଅବସ୍ଥା ବା କଅଣ ନୋହିବ ? ଟିକିଏ ତୁମେ ବୁଝି-ପାରୁନାହଁ ? ନା—ଭଲ ମନ୍ଦ ବୁଝିବା ଗୁଣକୁ ଦୂରକୁ ଠେଲି ଦେଲଣି ମ ?

(୬)

ଡର ନାହିଁକି ନନ୍ଦ ପର ତରୁଣୀ ହରଣୁ ?
ତୋର ଲାଗି ଘେର ପଡ଼ିବ ଯେ ହେବ ଗୌରବ ପତି ଅପେକ୍ଷଣୁ ।୧।
ତୋଳା ପ୍ରତିମାକୁ ପସିଟେନ୍ତି ତୁମ୍ଭଙ୍କୁ
ମନେ ଶ'ଦା ଅଛନ୍ତି ପାଳି,
ଡୁବିବଟି ଧନ ! କେଳିକା ମୋହନ
ନେଉଛ ଯେ କୁଳ ପାଳି ।୨।
ଡକା ଦେବା ଦିନେ ଅରଣ୍ୟେ ଭଜନେ
ଦେଖିଛୁଁ ଶକଟ ଦଶା,
ଡାକ-ମଧୁପାକୁ ଡାକ ଆଣିବାକୁ
ଏଠାକୁ କାହା ଭରସା ? ।୩।



ଶ୍ରୀକୃଷ୍ଣ—ଚତୁରୀ ଲଳିତେ ! ତୁମ୍ଭର ଶ୍ଳେଷଭାଷା ଠାରୁ, ଏ ଉପମା ଏକା ମୋତେ ବେଶି ବାଧୁଛି ।

ଲଳିତା—ଶ୍ୟାମ ? ଉପମା ତ ନୁହେଁ, ସତ କଥା ମୁଁ କହୁଛି । (ମଧୁପ୍ରତି) କେଉଁ ପଦକୁ ଭୁଲି ମୋର ମିଛ ଏଥିରେ ମଧୁ ?

ମଧୁ—ନାଃ,— ପଦ ପଦକ ତ ପଦକ ! ଦେଖ, ମୁଁ ଆଉ ବେଶି କଅଣ କହିବ ଯେ

ଲଳିତା — କାହାର ସାହସ ହେବ ଶ୍ୟାମ, ସେ ହରିଣୀନେତ୍ରାର ନୟନରୁ ନୀର ଦେଖିବାକୁ ? ସେ ଲଳିତ ଅଙ୍ଗ କି କଷ୍ଟ ନ ଭୋଗିବ ? ଏସବୁ ଆଶା ଛାଡ଼ଦିଅ ।

ଶ୍ରୀକୃଷ୍ଣ — ଲଳିତେ ! ତୁମ୍ଭର ସହାୟ ବିନେ ଶ୍ୟାମର ଜୀବନ ରହିବ ନାହିଁ । ତୁମ ଇଚ୍ଛା ।

ଲଳିତା — କାହିଁକି ? ତମକୁ ତ ବଂଶୀ ସ୍ୱନରେ ଡାକି ଆସେ, ତୁମ୍ଭେ ନିଜେ ତାଙ୍କୁ ଡାକୁନାହିଁ ?

ମଧୁ — (ହସି) ଏ ତ ସତ କଥା ସଖୀ !

ଲଳିତା — ସତ ଯେ ମଧୁମଙ୍ଗଳ ! ମୋତେ ଲାଗୁଛି ସେଥିରେ ବି — ବେଶି କିଛି ଫଳ ହେବ ନାହିଁ ? ସେ ବଂଶୀ ନବାଜୁ, ଆମ କାନରେ ନ ପଡ଼ିଲେ ରକ୍ଷା ।

ଶ୍ରୀକୃଷ୍ଣ — (ଡ)

ତାଳେତ ତାଳିଲ ନାହିଁ କୃପାସୁଧା ଝରିକ ରେ
ଚକ୍ରା ବାଜୁଥାଇ ବୃନ୍ଦେ ଲଳିତାର ହୃଦ୍‌ମୂଳେ
କରୁଣା ଅଛି ବୋଲି ଯା ନେଲା କେ ତା ହରି କରେ ।୧।
ଢୁକାଇ ଦେଲେ କୃଷିତ ଚକୋର ଚଞ୍ଚୁରେ ଶୀତ-
ଭାନୁ ଚନ୍ଦ୍ରିକାକୁ ବର୍ତ୍ତ ଯାଏ କିଛି ସବ କରେ ।୨।



ମଧୁ — ଲଳିତେ ! ଦେଖିଲ — ବିରହରେ ସଖାଙ୍କର ଅମର ଦେହ ତରଳି ତଳି ଗଙ୍ଗପର ହେଲାଣି । ଶ୍ୟାମ ତନୁରେ ଆଉ କଅଣ ଅଛି ?

ଶ୍ରୀକୃଷ୍ଣ — ସଖି ! ମୁଁ ଅତି ହୀନଦଶା ଭୋଗିବାରୁ ମନ ଖୋଲି ସବୁ ତ କହୁଛି । ମୋତେ ଦେଖି, ମୋର ଏ ଗୁଡ଼ୁବାଣୀ ଶୁଣି,ମୋର

ଦଣ୍ଡ ବିବେଚନା କର ମଧ୍ୟ, ମୋର ଜୀବନ ରକ୍ଷାର ଏକା-
ମାତ୍ର ଉପାୟକୁ ଅଣାଇବାର ଚେଷ୍ଟା ନ କର ମୋ ଉପରେ
ପୁଣି କୋପଦୃଷ୍ଟି ପକାଇବା କି ଲଳିତା ପକ୍ଷରେ ସମୁଚିତ ?
ତୁମ୍ଭମାନଙ୍କ ପରି ହେମଗୋରୀ ସୁନ୍ଦରୀଙ୍କ ହୃଦୟ ଏତେ
ନିର୍ଦ୍ଦୟ କାହିଁକି ? (ହାତ ଧରିଲେ)

ଲଳିତା – ଫଳାଞ୍ଚଳ ଅଜଣା, (ହସି) ବାଳ ତୁମ୍ଭର ଏ ଦୁଃଖ ଦେଖି
ମୋତେ ହସ ଲାଗୁଛି ।

[ଣ]

ଅତସୀ କୁସୁମ ସମ ଶ୍ୟାମ ହେ ମୁଁ ଗଲି ଟି ।୦।

ଅଳି ତୁମ୍ଭର କାତର ଅବସ୍ଥା ସେ ଯେ ବଡ଼
ଅବଶ୍ୟ ତା ଶ୍ରୀମୁଖରେ ମୁଁ ନିବେଦନ କଲି ଟି ।୧।

ଅଧ ଅଧରରେ ସ୍ମିତ ଉଲ୍ଲସି ହେଲେ ଲଜ୍ଜିତ
ଉତ୍ତର ଏହାଟି ବୋଲି କୃପା-କଳ୍ପବଲ୍ଲି ଟି ।୨।

ଆରକତ କଲେ ମୁଖ ଅଖଣ୍ଡ ସୁଧା ମୟୂଖ
ଅବୁଝ ସରବ ମୋର ଜାଣିକି ଲବେଁ ମଲି ଟି ।୩।

ଅଦୃଷ୍ଟ ବନ୍ଧୁ କିଶୋର ଅଙ୍ଗୀକାର କଲେ ସର୍ଜ୍ଜ
ଅଭାବେ ଉତ୍କୁନ ହେବ ଏବକ୍ଷବ ପଲ୍ଲୀ ଟି ।୪।



(ଲଳିତା ପ୍ରସ୍ଥାନ କଲେ)

ମଧୁ – (ହସି) ସଖା ! ଏଥର ଭଲ ଟିକିଏ ହସ । ଆଜ କାହିଁକି ?
ଦରଅଣାକୁ ତ ବଳ ପାଇଲ । ବହୁତ ଖାଟିଛୁ । ଭୋକ
ହେଲାଣି । ଏଣିକି ଗୃହ, ଫେରି କଥା ବୁଝ । ଶୁଣିଲ ? ,ଏ
କେମିତ ଜଣେ ? ଶଙ୍କା, ଶଙ୍କା ।

ଗୀତ

ମୁଁ କି ଏମିତି ସେମିତି ଜଣେ ?
ପିଇଛି ଷିଅଁକି                    ବୃନ୍ଦି କି ନାଉଁଣୁ
ଗୋପ ଗଉଡୁଣୀ ପଣେ ।୦।

କ୍ଷୀରସର ଖଣ୍ଡ ମିଶା ପେଟପୁର ଢେଳ
ବୃନ୍ଦି ମୂଳ ଦମ୍ଭ କରେ ଚକ୍‌କଣିଆ ଚଙ୍କ
ଏଣେଢେଣେ ପଡ଼ିଯାଏ ଏଇ ପେଟ ଲୋଭ ଜଣେ ।୧।

ବାଲି ଭୂଇଁ ପଡ଼ିଆରେ ଫୁଟାଏ ମୁଁ ଫୁଲ
ଶ୍ୟାମ ବିନା କିଏ ବୁଝିବ ମଧୁଆ ବୃନ୍ଦି ମୂଲ
ଜଉଗଲା ଚଢ଼େଇ ପକ୍ଷୀ ଗୋଟେ ଗୋଟି ଗଣେ ।୨।

ସବୁଆ ସବୁଆ ହାଡ଼ ଧିଁ ଖଣ୍ଡ ଦେଖୁଛ କି ମୋର ?
ମୋଟା ବେଶି ହେଲନାହିଁ ଲୋଭ କରେ ବୈର
ବୃନ୍ଦି ମୋର ସେମିତି ସବୁ ନ ଥିବ କଣ୍ଢୋଇଣେ ।୩।

(ଗାଇ ଗାଇ କୃଷ୍ଣଙ୍କୁ ନେଇ ପ୍ରସ୍ଥାନ)

---

## — ୨ୟ ଦୃଶ୍ୟ —

### -ପଥ-

(ଲଳିତା ଗାଇ ଗାଇ ପ୍ରବେଶ)

ଗୀତ

ଫଗୁଆ ମେଘେ ଖେଳଇ ସୁନା ଥାଳିଟି ।୦।
ଡାହାଣିଆଁ ଖରାଟି                    ଲୁଚି ଛପି ଗୃହେଁ
ଠାରି ଡାକଇ ସଞ୍ଜ ବାଳୀଟି ॥

ପକ୍ଷୀଏ ମିଳି ଉଡ଼ ଗାଇ ଯାଏ
ଆକାଶ ବେକେ ମୋତି ମାଳିଟି ॥
ଘଣ୍ଟି ରୁଣୁ ଝୁଣୁ ଗୋଧନ ବାହୁଡେ
ଚଳି ନାଚଇ ବନମାଳିଟି ॥



## ଷଷ୍ଠ ଦୃଶ୍ୟ

— ଉଦ୍ୟାନ—ବାଟିକା —

(ଶ୍ରୀମତୀ ବିରହ ଜ୍ୱରରେ ପୀଡ଼ିତା—ସଖୀମାନେ ବିମର୍ଷ ମନରେ ଘେରି ରହିଛନ୍ତି ଓ ସେବା ଶୁଶ୍ରୂଷା କରୁଛନ୍ତି)

ତୁଳସୀ – ନାଇଁ ସହି, ଠିକଣା ନାହିଁ । କେତେବେଳେ କମ୍ପ, କେତେବେଳେ ଗରମ – ପଦ୍ମପତ୍ର ତାଙ୍କୁ ଗରମ ଲାଗୁଛି ।

ବିଶାଖା – ଲଳିତା ଫେରୁ, ତା'ଛଡ଼ା ଯାଙ୍କୁ ଔଷଧ ନାହିଁ କିଛି ।

ଶ୍ରୀମତୀ – (ଚମକି ଏଣେତେଣେ ଚୁହିଁ, କାନେଇଁ ରହି)
କିଏ ? ହଁ । ମୋର ନୁହେଁ ତାଙ୍କରିମାନଙ୍କର ବିଳମ୍ବ—
ମୁଁ ତ କେତେବେଳୁ ବେଶ ସାରି ବସିଛି । ଆରେ ! କଜ୍ଜ୍ୱଳ
ଘେନ ନାହିଁ ପରି ! ଆଣିବୁଟି ସହି – ଆଣିବୁଟି ଦର୍ପଣଟା,
ଦେଖେଁ – (ଜଣେ ସଖୀର ପ୍ରବେଶ)

ବିଶାଖା – ଛି, ସହି – କଅଣ ଏମିତି କହୁଛ ? କାହାକୁ କହୁଛ ?

ଗୀତ

ବିରହ ମନ୍ଦେ ଖେଦ ବିରହ ରାଣୀ – ଏ ସଜନି !
ଘନଶ୍ୟାମ ଝୁରୁଥିବନି ॥
ଫେରିଲେ ଲଳିତା ସଖୀ, ତୋ ଦୁଃଖ, ଚାହିଁବ ନାହିଁ,
ସାଜ, ସାଜ, ସଜ ସଖି ଅଭିମାନିନୀ ॥



(ଲଳିତା ଏହି ଗୀତ ମଧ୍ୟରେ ଶ୍ରୀମତୀଙ୍କ ଅଦ୍ଭୁତ ଅବସ୍ଥାରେ ଏକ କରରେ ପହୁଞ୍ଚି ଥିଲେ – ଶୁଣୁଥିଲେ, ବିଶାଖାଙ୍କୁ ଠାରି ଡାକିଲେ, ଓ ବିଶାଖା ଗଲେ-ପରେ ଉଭୟଙ୍କର କି ପରାମର୍ଶ ହେଲା)।

ଶ୍ରୀମତୀ – ନାଁ, ଏତ, ସେ ନୁହେ – ବଂଶୀ । ଶୁଣ ସଖି ! ଆହା, ହା ! କି ସୁନ୍ଦର ! (ହୃଦକୁ ହାତଠାରି)

ଗୀତ

ସଖିରେ ! ମୋହନ ମୁରଲୀ ଧୀରେ ବାଜେ । ୦ ।

କାନର ଭିତରେ ପଶି – ମରମ ପରଶେ ଗୋ
ମରେଁ, ମରେଁ, ମରେଁ ସଖି ଲାଜେ ॥
ଯମୁନା ଲହରୀ ତୁଳେ, ତାନ ମିଶାଏ
ବରଜ ରମଣୀ କୁଳ ମାନ ଭସାଏ
ଅଳସ ଅଳପ ହସା- ତାର ଅଧର ଗୋ
ଚେତନେ ସ୍ୱପନ ସାଜେ ॥୧॥



ତୁଳସି – କଅଣ ଏମିତି ଶୁଣିଲ ସହି ? କେହି ତ ନାହିଁ, ଶୋଇପଡ଼, ଶୋଇପଡ଼ ।

ଶ୍ରୀମତୀ – ନାଇଁ ? କେହିନାହିଁ ? କିଏ କହିଲା ? ଦେଖିଲ ! ସେଇ ଶ୍ୟାମ ନଟବର, ତ୍ରିଭଙ୍ଗ ମୁରତି ! କୋଟି ଚନ୍ଦ୍ର ସୁଶୀତଳ ପରଶଟି ସହି ! ଆହା – ବଡ଼ଶୀତଳ (ଚକ୍ଷୁମୁଦି) ଦିଅ ! ଦିଅ ! ଲିଭିଯାଉ ସବୁ ଜ୍ୱାଳା । ଆସ, ଦିଅ ! ଆହା-ହା ! (ଢଳି ପଡ଼ିଲେ)

(ଲଳିତା ବିଶାଖା ଧାଇଁ ଆସିଲେ )

ବିଶାଖା—ଜଳ ଆଣ ସହି, ପଙ୍ଖାକର —

(ଜଣେ ଜଳ ଆଣି ପଙ୍ଖାକଲା),

ଲଳିତା—ବିଶାଖେ! ଏତେବେଳେ ଔଷଧ କେବଳ ଶ୍ୟାମ୍ ନାମ-
ମାତ୍ର ତାଙ୍କୁ ଶ୍ୟାମଙ୍କର ଜଳଣ୍ଡା, ତାଙ୍କ ଦୁଃଖ କହିଲେ,
ଏ ରୋଗ ବଢ଼ି ପଡ଼ିବ ।

ବିଶାଖା—ତେବେ ?—

ଲଳିତା – କହୁନାହିଁ । ତାଙ୍କୁ ନାମ ବାଣୀ ଶୁଣାଇଁ, ତା'ପର ସଙ୍କ-
ଳ୍ପକର ଠିକ୍ ଏ ସେବାଠକୁ ଅସିଲେ ଧୀରେ, ଧୀରେ,
ତାଙ୍କୁ ସବୁ କହିବା । ବାଙ୍କ—ଏକାବେଳେ ନୁହେଁ । ସଖି,
ଶାକର ମଧୁର୍ ବୋଲ୍, ଏକାବେଳେ ଗିଳେଇ ଦେଲେ
ଅଜୀର୍ଣ୍ଣ କି ନହେବ ସହି ?

ତୁଳସୀ – ଯାହା ଭଲ ମଣୁଚ କର ।

ଶ୍ରୀମତୀ – (ଚେତନା ଲଭି) କାହିଁ ? କୁଆଡ଼େ ଗଲେ ସେ ?

ବିଶାଖା – କେହିତ ନାହିଁ ସହି ! ଲଳିତା ଫେରି ଆସିଛନ୍ତି ।

ଶ୍ରୀମତୀ —(ମୁଣ୍ଡ ତୁଲାଇ, ଚଞ୍ଚଳ ହୋଇ) ଲଳିତା ! ଆସ ଆସ ସହି !
ଶ୍ୟାମ କଥା କହି, ପୋଡ଼ା ପିଣ୍ଡରେ ଜୀବଦିଅ ମୋର ।

ଲଳିତା – (ନୀରବ, ଛଳବିମର୍ଷ ଭାବ ପ୍ରଦର୍ଶନ)

ଶ୍ରୀମତୀ – ହିଁ ? ଏକଣ ସହି ? କିଛି କହିଲ ନାହିଁତ ? –

ଲଳିତା – କଅଣ କହିବ ସହି ? (ଛଳ ଦୁଃଖରେ ଦୀର୍ଘଶ୍ୱାସ ପକାଇ)
କଅଣ ବୋଲି ଅଶ୍ୱାସନା ଦେବ ?

(ତ)

ଚୋ ,ଚନ୍ଦନ ତମାଳ ଶ୍ୟାମ ମୋ ମଦନ୍ତି କପିଲା ରେ
ତଥାପିତ ତକେ ଦେଲେ ଚୋ ସ୍ନେହ ନ ରହିଲା ରେ ॥

ଛଳେ ବସନ ପ୍ରହାର ଦୃଶା ଦଶନାନ୍ତେ ଧର
କହିଲେହେଁ ଅନୁସର ଲଜ୍ଜିତ ନଦଶିଲା ରେ । ୧ ।

ତହିଁକି ବଙ୍କିମ ଭାବ ତର୍କିଲା ମୋ ଗୂଢ଼ ସ୍ତବ-
ତଟେକୁ ଭ୍ରଷ୍ଟେନ୍ତେ ଅବଧାନ୍ ବନୀ ହସିଲାରେ । ୨ ।

ଶ୍ରୀମତୀ—(ଅନ୍ୟମନସ୍କ ଭାବରେ) କଅଣ କହିଲୁ ସହି ? ଏ କଅଣ—
ସମ୍ଭବ ? ସେ ରୂପରେ, ସେ ଠାଣିରେ, ସେ ଛଳଛଳ ଆଖିରେ
ଏ କଅଣ ସମ୍ଭବ ? ଏ ସତ-ନା-ମିଛ ?

ଲଳିତା—ପ୍ରିୟସହି ! ଲଳିତା ଚିରଦିନ ତମର, ଚିରକାଳ ଅନୁଗତା ।
ଗଲ ସହି, ପରିଶ୍ରମ କଲ, କର୍ଣ୍ଣରେ ମୋର କଟୁକଥା
ଶୁଣିବାକୁ ଥିଲା ।

ତରସ୍ଥାର ପୂର୍ବ ଭାଷା ତରଳାଇ ସୁଖ ଆଶା
ତୋଟିକି ଚମ୍ପିଲା ତୃଷା ତମିର ବଳସିଲା ॥

---

ହେଲା ପଛେ ଶ୍ରୀମତୀ ! ତମର ଆଶା ପୂରି ଥାଉନ୍ତା କି;
ତମର ଗୌରବ ହାନି ହେବାଟା ସିନା ମୋତେ ବେଶୀ
ବାଧୁଛି !

ତପନଯା ତଟକୁ ତୁ ତରୁଣୀଟା କେଉଁ କୁଳୁ—
ହେଲରୁ ଆସିଲୁ ହେଉ କହ ବୋଲି ଘୋଷିଲା ॥

(ସଖେଦେ) ଯେମିତି ଦେଖିଲି ସହି, ଯଦି ବା ଭାଗ୍ୟ ବଳରୁ ସେ
ଆଶା ପୂରିବ—ଶେଷରେ କେବେ ହେଲେ ଭଲ ହେବ-
ନାହିଁ । ଅନୁତାପ ସାର ।

ଶ୍ରୀମତୀ—( ନୀରବରହି ) ନାଁ, ନାଁ, ମନ ତ ମୋର ସେକଥା
କହୁନାହିଁ, ବିବେକ ମାନୁନାହିଁତ କାହିଁକି ?

( ଥ )

ଥାପିରେ କହ ତଥାପି ରେ ପ୍ରିୟସହି ! ଥିବ କି ଘୃଡବ ପ୍ରାଣ ॥
ଥିଲାପରି ସ୍ନେହ ଲାଗିଲାକି କହ ଅଛୁଟି ତୋତେ ମୋ ଗୁଣ ।୧।
ଥକାଇ ତୁ କହୁ କହୁ ଧୃତି ରହୁନାହିଁଟି ମୋହର କାଣ ।୨।

ଥୋକାଏ ତୋ ପ୍ରୀତ ବଢ଼ିଲା ସମ୍ମତ କଲେକି ମୋ ପଞ୍ଚବାଣ ଝୁଣା
ଥରେ ହେଲେ ବକ୍ର ହେବ ମୋତେ ନିଜ ବଇଁଆଇବ ପଞ୍ଚବାଣ । ଅ



ଲଳିତା—(ବିଶାଖା ପ୍ରତି) କଅଣ ଉତ୍ତର ଦେବ ସ୍ୟାର ? କି ଅଦ୍ଭୁତ ପ୍ରୀତି ! ଖେଳି, ଖେଳି, ଧରାଦେବ ମନେ କରିଥିଲି ସିନା ! ନାଃ-

ଶ୍ରୀମତୀ—ତୁନି ହୋଇ ରହିଲ କାହିଁକି ସହି ? ବନ୍ଧୁ କଅଣ ସତରେ ମୋର ସ୍ନେହ ସାମାନ୍ୟ ମଣି, ଫେରାଇ ଦେଲେ ତୋତେ ? କହ ସହି ? ଜୀବନରେ ଆଶ ଅଛି ନା- ଯମୁନା ?—

ଲଳିତା—(ବାଧାଦେଇ) ଛି, ଛି, ସହି,—

(ଦ)

ଦୁଃଖମୟ ନକର ସରସ ମନ ରେ ଦୁଃଖିଧନ !
ଦମ୍ଭ ଦେଖିବାକୁ ସିନା କଲି ଛନ୍ଦ । ୦ ।

ଦୂର ମୁଁ ଯିବାର ଜାଣି ହରି ଦନ୍ଦ୍ରେ ନଥି ଲଭିଲା ପରି
ଦ୍ୱିଗୁଣ ଆଦରେ ପ୍ରମୋଦନନ୍ଦରେ ମଞ୍ଜି ଦେନଗଲେ କରଧରି ॥

ଦୟା କର ଜର କରି ଶଠ ଦନ୍ତ ବାସେ ରଖି ଦନ୍ତ ସ୍ମିତ
ଦଶବାର ଅନାପସ୍ଥ ମୋତେ ଦେନା ଦେନ କରି ପଶୁରିଲେ ମିତ ॥

ଦେଖିଲି ଯାହା ଶ୍ରୀଅଙ୍ଗଦ୍ୟୁତି ଦଳି ହୋଇଗଲା ମୋର ଧୃତି
ଦ୍ୱିତୀୟାର ଶଶୀ ରେଖାପରି ଦଶିଗଲେନି ସେ ଇନ୍ଦ୍ରନୀଳକାନ୍ତି ॥



ବିଶାଖା—ଏଥର ସ୍ୱୀଚ ! ମୋ ଲଜ୍ଜିକା କଥା ଫଳିଲା ନା ?

ଶ୍ରୀମତୀ—ଫଳିଛି ସଖି- ଲଳିତେ, ବନ୍ଧୁ କଅଣ କହିଲେ ତୋତେ ? କି ଉପହାର ଦେଲେ, ଠିକ୍ ତୋର ଏ ଉପକାରର ପ୍ରତି-ଦାନ ହେବ ସହି ! ଜାଣୁ ନାହିଁତ ? ଲଳିତେ ! ଏତେ

ତୋର ଦସ୍ୟା ଗ୍ଲାନ ରାଧିକା ଠାରେ ? (ଗଳାରୁ ହାର କାଢ଼ି ଲଳିତା ଗଳାରେ ବାନ୍ଧି ବାନ୍ଧି ଗାଇଲେ)

(ଧ)

ଧୀରରେ କି ଧନ ତୁ ନ ଦେଲୁ ଆଜ
ଧଇଲେ କି ସତେ କର ଯୁବରାଜ ।୦।
ଧବଳବସ୍ତ୍ର କି ମୋର, ଧୁପି ଦେଇ ନିଜ କର
କୋଳକୁ ଆଣିଲୁ ଭଲା ଦ୍ୱିଜରାଜ ।୧।
ଧରାରେ ଯେତେ ପୁରୁଷ ଧୂର୍ତ୍ତ ତାହାଙ୍କ ଗୁରୁ ସେ
ଧନରୁ ଯେ ବଳେ ତାହାଙ୍କର ବ୍ୟାଜ ।୨।

ଲଳିତା—ମାନିନି ! ଅସ୍ଥିର । ତୋ ଧୈର୍ଯ୍ୟ ଦେଖିବ ବୋଲି ସିନା, କପଟ କରିଥିଲି — ଏ ଶୁଖିଲା ମୁହଁ ଦେଖି ଗ୍ଲତ ସହେ ନାହିଁ । ତୋ ଦୁଃଖ ଦେଖି ଶ୍ୟାମଙ୍କ ପାଖକୁ ଗଲି । ହେଲେ, ମନ ମାନିଲା । ଦେଖିଲି-ସେ ଚକୋର ପରି, ତୋର ଚନ୍ଦ୍ରମୁଖସୁଧାକୁ ଅନାଇଁ ରହିଛନ୍ତି । ତୋ ଉରହରେ ଶ୍ୟାମଲତା ହାଉଁଳି ପଡ଼ୁଛନ୍ତି । ସବୁ ହେଲା ସତ- ବାକି—

ଶ୍ରୀମତୀ—ସଖି ! ତୋ ମୁହଁରୁ ଆଶାବାଣି ଶୁଣି, ରାଧିକା ଆଉ ମରଣକୁ ଭୟ ରଖି ନାହିଁ । ସବୁତ ହେଲା ବୋଲି କହିଲୁ, ଆଉ ସନ୍ଦେହ କାହିଁକି? ବାକି ବୋଲି କହୁ, ତୁନ ହେଲୁ କାହିଁକି ତେବେ ସଖି ?

(ନ)

ନବ ବିଳାସିନୀ ରେ ! ନଷ୍ଟବେଶ ହାସିନୀ ।ଘ।
ନାହିଁ ବୋଲିବା ବାଣୀ ନପଢ଼ ନାହିଁ ଶୁଣି
ନଳିନାକ୍ଷି ରେ ହୋଇ କି ସନ୍ଦେହ !

ନନ୍ଦ ନନ୍ଦନ ପ୍ରେମା        ପ୍ରେମାରେ ନୁହନ୍ତି ସମା
ନିତମ୍ବିନୀ କି ଯେବେ ଗତ ଥିବ ।୮।

ନିଷ୍ଠୁର ଗୁଣ କୁଳ-        ଶରୁ ପଡ଼ୁଛି ବଳ
"ନିଷ୍ଠୁର" ତିନି ବର୍ଣ୍ଣ ନାହିଁ ଲେଖି
ନାଗରୀ ବିମୋହନ        ମନ୍ତ୍ର ମାନଙ୍କ ମନ
କପଟ ସମ୍ପୁଟରେ ଅଛି ରଖି ।୨।



ଶ୍ରୀମତୀ—ଏ ଫେର କି କଥା ସଖି ? ତୋ କଥା ଶୁଣି ଡାଃକା ଲାଗେ ମୋ !

ଲଳିତା—ନାହିଁ ସହି, ସତକଥା । ଯାଇଥିଲି ସେତେବେଳେ— ତାଙ୍କର ଭଲ, ମନ୍ଦ ସବୁ ତ କହୁଛ ? ଖାଲି ଶୁକ୍ଳପକ୍ଷରେ କି ମାସ ପୂରେ ? ଗୋଟିଏ କଥାରେ ମୋତେ ସନ୍ଦେହ ଲାଗିଲା—ଶ୍ୟାମ ତ ଜଣକର ନୁହେ, ଭାରି ନିଷ୍ଠୁର ସେ, "ନି ଷ୍ଠୁ ର" ବୋଲି ତିନୋଟି ଅକ୍ଷର ସେ ଶିଖି ନାହିଁ, ପଢିନାହିଁ କି ଲେଖିନାହିଁ । ଖାଲି ଆଡ଼ ନୟନରେ, ଛଳ ଆଖିରେ ଚାହିଁ, ମୁରଲୀବଜାଇ ନାରୀ ମନ ଗୈରାଇଜାଣେ, ବାକୀ-କାହାର ଠାରେ ନିଷ୍ଠୁର ସ୍ନେହ ରଖି ଜାଣେନାହିଁ । ଏହୁକ୍ଷଣି ତୋ ବିରହରେ ଝୁରୁଛି ସେ, ଦିନ ଘଣ୍ଟ ଜ୍ଞାନ-ନାହିଁ, ପଦ୍ମପତ୍ର ଗରମ ଲାଗୁଛି, କଦମ୍ବ ବନର ପବନ ତାକୁ ନିଆଁ ହୁଳା ପରି ଲାଗୁଛି; ପୁଣି ଦିନ ଆସିବ— ତୁ ଠିକଏ ତା ସ୍ନେହରେ ପଡ଼ିବାର ଜାଣିଲେ ସେ, ଦେଖିବୁ— ଉଗାରି ହସା ସାରହେବ । ଚନ୍ଦ୍ର କିରଣ ତୋତେ ଠାଣ ଖରା ପରି ଲାଗିବ ।

ଶ୍ରୀମତୀ—ଲଳିତେ ! ଏସବୁ ସତ ହେଲେ, ମୋର ଉପାୟ ? ଆଉ
ଗତି ରହିବଟିକି ?

ଲଳିତା—ସେଇଥିପାଇଁ ତ ଭଲ, ମନ୍ଦ ସବୁ କହୁଛି ସହି ! ପଚାରିଲ
ଯେବେ ମୋତେ, ମୁଁ କହେଁ, ଖାଇବା ପିଇବା ଅରୁଚି
ହେଉ ପଛକେ, ଶ୍ୟାମର କପଟ ଭୂଜାଲିଙ୍ଗନକୁ ଇଚ୍ଛା ନ
କର । ଅନ୍ୟଗତି ଥିଲେ କେହି ସୁନ୍ଦରୀ ସେ ମଧୁର ଚୂଳାଅର
ପ୍ରେମ ଲୋଡ଼ିବା ଠିକ୍ ନୁହେ । ପଛରେ ଘୋର ଦୁଃଖ
ଭୋଗି, ଆକାଶ ପୃଥିବୀ ଆଉ କହାଅ ନାହିଁ, ଆମ୍ଭମାନଙ୍କୁ
ବୁଡ଼ାଅ ନାହିଁ ସହି ! ସବୁ ତ କହିଲି, ଏଣିକି ତମ ମନ ।

ଶ୍ରୀମତୀ—ସନ୍ଦେହର ବିଷମ ଦୋଳାରେ ଦୋଳାଇଲୁ ଲଳିତେ !
ଭାସି ଯାଇଛୁ ଯେତେବେଳେ ବହୁଦୂର, ଉଜାଣିକି ବଳ
କାହିଁ ମୋର ? ଯମୁନା ଛଡ଼ା ଆଉ ଅନ୍ୟ ଆଶ୍ରା ତ ନାହିଁ
ସହି ! ଏ ପାତକ ତାଙ୍କରି ହେଉ । ଆଉ ତ ମୁଁ ଫେରି-
ପାରିବି ନାହିଁ । କାହିଁକି ତେବେ ମୋତେ ଏ ସବୁ ଶୁଣା-
ଇଲୁ ସହି ? ଆଉତ ପାରୁନି ନାହିଁ—କୁଆଡ଼େ ଯିବି ସହି ?
ବାଟ କାହିଁ ମୋର ? ଏଁ, ଏସବୁ ତୋର ସତ କଥାତ ?

(ଢଳି ପଡ଼ିଲେ)

(ଘ)

ପରମାଦ ବଡ଼ ଭୁଲି ଗୋ—ପ୍ରିୟସହି
ପାରୁ କେତେ ଛନ୍ଦେ ମୋହି ଗୋ ।୦।

ପରମ ପଦରେ ଦେଇ ଜାଣୁ ତୁ ବସାଇ
ପୁଣି ତହୁଁ ଜାଣୁ ତଳାତଳକୁ ଖସାଇ

ଆସୋରିଇ ମନୁ ନାନା ବଦନ ଲସାଇ
ପୀଡ଼ୁ ଅଶ୍ରୁ ବହାଇ ଗୋ ॥ ୧ ॥

ପରବ ଚନ୍ଦ୍ର ଟେପୁଷ ପେଇବା ପିୟୁଷ
ପରିଣତ ସମୟେ ସେ ହେବ ଯେବେ କଷ୍ଟ
ସୁଗନ୍ଧ ହେବା ଗଙ୍ଗାରେ ଜନ୍ମିଲ କଲ୍ପକ୍ଷ
ପ୍ରୟୋଗ କରିବା କସ ଗୋ ॥ ୨ ॥



(ଗୀତପରେ ହଠାତ୍ ଗୁଲିଗଲେ)

ଲଳିତା — ଦେଖୁଛ ବିଶାଖେ ? ଦେଖ, ଦେଖ —

ବିଶାଖା — କୁଆଡ଼େ ଗଲେ —? ସଖି! ସଖି!

(ଉଭୟେ ପଛେ ପଛେ ପ୍ରସ୍ଥାନ)



## — ୪ର୍ଥ ଦୃଶ୍ୟ —

## -ଗ୍ରାମ୍ୟ ପଥ-

( ମଧୁ ଓ ଶ୍ରୀକୃଷ୍ଣ ପ୍ରବେଶ )

ମଧୁ — ବୁଝିଲ ସଖା, ପାଠ ବୋଇଲା — ଚଳନ୍ତରେ କାର୍ଯ୍ୟସିଦ୍ଧି, ଯେ ତ ଆଜ କ୍ଷେନା ମଣ୍ଡା ନୁହେଁ ଯେ — ଠାଆକୁ କନା ଗିଳିଦେଇ, ଭୁଜକୁ କନା ପାଣି ଭାଲୁଟିଏ ପିଇ, ହେଉଡ଼ ଟେ ମାରିଦେଇ, ତଳେ ପାଣିଧର ଅଗସ୍ତି ବୋଲି ପେଟୁଟିରେ-ହାତ ବୁଲେଇ ଦେଲେ — ଯା — ଜୀର୍ଣ୍ଣ ହୋଇଗଲା, ଏଥିରେ କେତେ ନଷ୍ଟ, ଖଷ୍ଟ, — ଏ ପରି —

(ଗୀତ)

ଦଗା ଧଆ ପର ପୀରତ
ଜଣ ତକ ଦକ ହୁଅଇ ଘାତ । ୦ ।

କଲପନା ତୁଳିକା ଅଙ୍କା ପ୍ରେମଚମ୍ପୂ ବରନ ମଙ୍ଗା
ସେ ମନ ଛନକା
ଏ ଆଖିର ଲୁହ ସେ ଆଖିରେ ଭର ଆକାଶକୁ ଚାହିଁ କହୁଏ ସାତ ।୧।

ଶାଣ ଦଅ ପିରତି କାତ ଖୋଜେ ରସ ରସିଆ ଘାତ
କ ଜାତ ଅଜାତ
ଆଲୁଅ ଅନ୍ଧାର, ଏକା କଥା ତାର
ସୁଅ ମୁହେଁ ଘର ବଣୁଆଁ ହାତୀ । ୨ ।



ଶ୍ରୀକୃଷ୍ଣ—( ନେପଥ୍ୟକୁ ଚାହିଁ ) କଏ ଦ ଜଣ ଏଣିକି ଅସୁଛନ୍ତି, ଦେଖିଲ !

ମଧୁ— (ଚାହିଁ) ହଁ ! ଠିକ୍, ତମ କରମ କଅଣ ଏମେତେ ସଲଖ କି ? ଖାଲି ତୁମେ ସିନା ତନ ଭଙ୍ଗିଆ ବଙ୍କା, ନୋହିଲେ କରମ କଅଣ ? ସିଧା—ଏକଦମ୍ ବାଉଁଶ ଡେଙ୍ଗା ! ଆସ, ଏଣିକି ଆସ, ଟିକିଏ ଅଣଆଡ଼ୁଆ ହୋଇ ଆସ । ( ଶ୍ରୀକୃଷ୍ଣ ଟିକିଏ ଚାହିଁବାରୁ ) ଆରେ ! କଥା ମାନ ମୋର ! ଏଠି ଆଜ ଏତେବେଳେ ସେ ଗଉଡ଼ୁଣୀ ବୁଦ୍ଧି ତମର ପଟିବ- ନାହିଁ । ଆସ, ଚାଲିଆସ — ହଁ ! ଆଜ ଗୋଟିଏ କଥା ଶୁଣ ! ଯେବେ କଥାଟାର ସାର ସାର କାଢିବାକୁ ଚାହଁ, ଅକ୍ଟମଣଙ୍କର ହାଙ୍ଗ ମାର । ସାଫ୍ ସାଫ୍ ସବୁ ମନକଥା ଗାଣ- ପକାଇବ । ସେ ବଙ୍କା ଭଙ୍ଗୀରେ ଖେଳାଖେଳ ଆଉ ନାହିଁ;

ନୋହିଲେ ସେ ଚମ୍ପଟ ଦେବେ, ତମ ମନକଥା ମୁଣ୍ଡିରେ ଥିବ—

( ଗୀତ )

ବନର ମାଳତୀ ପରି ବନେ ଫୁଟି ଝଡ଼ିବଟି
ମନକଥା ମନେମନେ ଅକାରଣେ ମରିବଟି ।୦।

ଆଜ ସେ ହୀରଙ୍ଗ ଠାଣି, ନଥିବ ବାଙ୍କସୁହାଣି
ମୁରଲୀ ମଧୁର ବାଣୀ କାହା ଠାଣ ନଥିବଟି ।୧।

ସେ କେଳିକଦମ୍ବ ତଳ, କବା ସେ ଯମୁନା କୂଳ
କେ ସଗ୍ଗରେ ବାଙ୍କଚୂଳ ସବୁସୁଖ ସହିବଟି ।୨।

(ମଧୁ ଶ୍ରୀକୃଷ୍ଣଙ୍କୁ ନେଇ ଅନ୍ତରାଳକୁ ଗଲେ)

ଲଳିତା—(ତୁଳସୀ ସହ ପ୍ରବେଶ ହୋଇ) ତା ପରେ ?—

ତୁଳସୀ—ବଣାଖ ତାଙ୍କୁ ଠିକ୍ ବାଗେଇ ଦେଇଛୁ, ମୁଁ ତାଙ୍କ ସାଙ୍ଗ ଛାଡ଼ କେତେବେଳୁ ଏ ଖବର ନେଇ ଆଗରେ ଆସି ତମକୁ ଖୋଜି ଖୋଜି ଭେଟ ପାଇଲି । ( ପଛକୁ ଗୃହିଁ ) ଏଇତ ! ସେ ଦହେଁ ଆସୁଛନ୍ତି—ଦୂରରେ ଅଛନ୍ତି । ମୁଁ ଖସିଯାଏଁ । ତୁମେ ଥରେ ଆଗମୁହାଁ ହୋଇଯାଇ ଏଇ ବାଟେ କୁଆଡୁ ଫେରିଲା ପରି ହୋଇ ଆସ, ହାବୁଡ଼େ ପଡ଼ିବେ ଯେ ।

(ତୁଳସୀ ପ୍ରସ୍ଥାନ)

(ଲଳିତା ଯାଉଁ ଯାଉଁ ପଛରୁ ଆସି ମଧୁ ଡାକିଲେ)

ମଧୁ—ଏ କିଏ ଗୋ ? ସଜନୀ ?

ଲଳିତା—(ଫେରିଗୃହିଁ) ଓଃ, ସାଇଲେ ମୋତେ—ବାହିଁବ ତାକ ଛାଡ଼ୁଛ ହେ ?

ମଧୁ—(ମୁଣ୍ଡ କୁଣ୍ଡାଇ) କଅଣ କି ? ସେଇ— ସେଇ କଥାଟା—
ସେଇ—

ଲଳିତା—କଅଣ ହେ ସେଇ ? ଗେଲେଇ ହେଇ, କଣ ପିନ୍ଧିଛି ଏ !
କହୁଲେ ସେଇ—ଏଇନେ ଅକାଳରେ ସବୁ ସମ୍ପତ୍ତି !

ମଧୁ—ନାହିଁ, ଆମର ଆଉ କି ସମ୍ପତ୍ତି ? ସେଇ ହଳଦୀ କାଠୁଆ
କଜଳପାତି ।

ଲଳିତା—ଯା, ଯା, ସବୁବେଳେ ଗୁପ୍ତେ ବକ୍ତୃ କରନ-ଭଲନାହିଁ
ମନ୍ଦ ନାହିଁ,—ଥଟ୍ଟା !        (ଶ୍ରୀକୃଷ୍ଣ ପ୍ରବେଶ)

ଶ୍ରୀକୃଷ୍ଣ—ନାହିଁ, ନାହିଁ, ଥଟ୍ଟାନୁହେ ! ଗୃଢକର ଯେ, ନବଘନ ବିନା
ଭରଷା ନାହିଁ ।

ଲଳିତା—କାନ୍ତୁ ଶ୍ୟାମ ! ଏଘନରେ ଯେ ବରଷା ନାହିଁ !

ମଧୁ—କଅଣ ! କିବାଟ ଖବ ? ଠିଇଁ କିଁଅ ?

ଲଳିତା—ତୁନି ହୁଅ ମଧୁ !

ମଧୁ—(ମୁଖବନ୍ଧକର ଅଙ୍ଗୁଠି ଦେଇ) ହେଲା !

ଶ୍ରୀକୃଷ୍ଣ—ସହି,—

ଲଳିତା—ଆଉ, ସେକାଲ ନାହିଁ, ତମର ଖବର ନେଇଯାଇ—
ବହୁତ ଅପମାନ, ବହୁତ ଗଞ୍ଜଣା ସହିଲି ଶ୍ୟାମ ! ଶେଷରେ
ଅବିଶ୍ୱାସିନୀ ହେଲି । କାହାକୁ କହିବି ? କର୍ମସେ ।

ଶ୍ରୀକୃଷ୍ଣ—କଅଣ ହେଲା ସହି ?

ଲଳିତା—କାଗିଣ—ଢଉଁ। ଖାଇଲି- ଫଳ ଏଇ !

ଶ୍ରୀକୃଷ୍ଣ—ତେବେ କଅଣ ?—

ଲଳିତା—(ନେପଥ୍ୟକୁ ଚାହିଁ) ତେବେ ଏବେ ଆଉ କଅଣ ? ବାଟଟା-
ରେ ସ୍ତ୍ରୀ ଲୋକ ମୁଁ । ଛି, ତୁମେ ବେଗେ ଗଲ ଏଠୁଁ—

ଶ୍ରୀକୃଷ୍ଣ—ଉମଙ୍ଗଡ଼ା, ଆଜ୍ କଏ ଅଛୁ ଲଳିତେ ! ଏ ବିପଦରେ ମୋର ସାହା ହେବ ?

ଲଳିତା—(ପୁଣି ନେପଥ୍ୟକୁ ଗୁହିଁ) ଓଃ, ଗଲ ତୁମେ ଆଗେ, ଅଚ୍ଛା ଶୁଣ, ଦେଖାହେବ । ବେଗେ ଯାଅ ବାହାର ଏଠୁଁ—ଯାଇ ଆର ପାଖେ କୁଞ୍ଜପଥେ ଲୁଚି ବସିଥାଅ ତା'ପର ଯାହାହେବ ଅଛନ୍ତ ତ ବଡ଼୍, ବୁଝି ଦେବେ । ଯାଅ, ଡେର କରନାହିଁ । ଗଲ ? ଯାଅ—

ଶ୍ରୀକୃଷ୍ଣ—ଲଳିତେ ?

ଲଳିତା—ଓଃ, ଯାହା କହୁଛୁ କର । ଗୁଲଆସ ତେବେ, ସବୁ ଅନ୍ତ-ରାଲରେ କହବ । ଏଠି ରହନାହିଁ । ବୁଝୁନାହିଁ ? ଏହା ଗୋପ ଦାଣ୍ଡ ବୋଲି ? ଅସ ! (ସମସ୍ତେ ପ୍ରସ୍ଥାନ)

(ଶ୍ରୀମତୀ ଓ ବିଶାଖା ପ୍ରବେଶ)

ବିଶାଖା—ଭଲ କଲନାହିଁ ସହ, ଲଳିତାକୁ ଅବିଶ୍ୱାସ କର । ସେ ଯେ ତମର ।

ଶ୍ରୀମତୀ—ଜାଣେ ସବୁ—ବାଳ ବିଶାଖେ ! ମୁଁ ତ, ମୁଁ ରେ ନଥିଲା କଅଣ କରିବ ସହ ? ଜୀବନ କାହିଁକି ରହିବ ଆଉ ? ଗୃହ-ଆଡ଼ୁ ତ ମୋର ଭରସା ତୁଟିଲା ଏବେ !

ବିଶାଖା—ଅଧୀର ହୁଅ ନାହିଁ, ଲଳିତାକୁ ପୁଣି ଧରିବାକୁ ହେବ । ତାହାବିନା, 'ଶ୍ୟାମ ମିଳନର ଆଶା ଅସମ୍ଭବ । ହେଇଟି ସହ ! ଲଳିତା ଏଣିକି ଆସୁଛନ୍ତି । (ଲଳିତା ଆସୁ ଆସୁ ଶ୍ରୀମତୀ ଶୀଘ୍ର ତାଙ୍କ ନିକଟସ୍ଥା ହୋଇ )

ଶ୍ରୀମତୀ—ଲଳିତେ,— (ମୁହିଁ ପୋଛିଲେ)

ଲଳିତା — ଆଜ କାହିଁକି ସହି, ଅବିଶ୍ୱାସିନୀ ମୁଁ, ମୁହିଁ ମୋର ନଗୃହିବା
ଠା ଭଲ, ମୋ ସଙ୍ଗ ତ୍ୟାଗକର — ଲଳିତା ମରିଛି ସହି,
ମୁଁ ସବୁ ବୁଝିଛି । ଯେ ଯାହାର ଭାଗ୍ୟ ଭୋଗ କରିବ ସିନା !
ମିଥ୍ୟାତ ଲଳିତାର ଜୀବନ ! ସବୁ ବୁଝିଛି, ଆଉ କାହିଁକି ?

(ଫ)

ଫାଟି ପଡ଼ିବାର ନିକୁଞ୍ଜ- ଅଙ୍ଗାର- ଶ୍ରମୁ ମୋ ଚରଣ ତଳ,
ଫଚ୍ଛର-ଘୋର ଅଙ୍ଗରକୁ ହେବାର ଏହି ଏକା ଏଥୁଁ ଫଳ,
ରେ କିଶୋର, ଫିଟିଗଲା ଯେ ସନ୍ଦେହ ।
ଫୁଲିଗଲୁ ଫୁଲଲକ୍ଷ୍ମୀ ମରସିକା ଜାଣି ପରା ଶ୍ୟାମ ସ୍ନେହ ରେ । ୧ ।
ଫନ୍ଦାଇ ନାନା ବଚନେ କହି ଦନ୍ତେ ତୃଣ ଧରିବାର ହେଲା
ଫଟା କପାଳରେ କୁଟିଳ ହୃଦୟା ବୋଲାଇବା ଲେଖାଥିଲା
ରେ କିଶୋର, ଫନ୍ଦାଧନ ତୁଟ ମୋର ।
ଫରିଆଦ କାହିଁ ତୋନାମେ କରିବି, ନିନ୍ଦା କଲେ ପଛେ କର । ୨ ।
ଫକତ ହୋଇ ଦୂରରେ ଥିଲେ ତୋତେ ଭଜନ୍ତ ଥିବାର ସତ
ଫେଡ଼ନ୍ତୁ ତୋ କଷ୍ଟ ସୁଖ ଦେଇ ଅଶ୍ରୁସ୍ତୁତ ଏ ଆମ୍ଭ ବାଞ୍ଛିତ
ରେ କିଶୋର, ଫୁରୁଣା ହୋଇ ତୁ ରସ ।
ଫେରିଆସି ମାନ, ଆମ୍ଭ ଆଗେ ନେନକଞ୍ଜୁ ନୀର ନ ବରଷ । ୩ ।



ଶ୍ରୀମତୀ — (ଲଳିତାଙ୍କ ଆଡ଼କୁ ମୁଖଟାଳି ସଖେଦେ)
ସହି ! ଏଡ଼େ କଠୋର ହୁଅନାହିଁ । ରାଧକାର ତୁ ପରା ଏକା
ବଳ ?

ଲଳିତା — ନାଇଁ ସହି, ଆଜ ସେକାଳ ନାହିଁ । ଶ୍ରୀକୃଷ୍ଣ ପ୍ରମୋଦନୀ,
ମୁଁ ଅବିଶ୍ୱାସିନୀ — ମୋତେ ଦୂତୀକରି ପଠାଇବାରୁ ସିନା

ତୁମେ ସଫଳ ମନୋରଥ ହେଲ ? ମୋର ପାଦସେବାର
ଫଳ ମୋତେ ମିଳିଗଲାଣି । ଆଜ କାହିଁକି ?

ବିଶାଖା – ତୁ ସହି, କାହାପାଇଁରେ ଏ ଅଭିମାନ ତୋର ଆଜ ?

(ଗୀତ)

ଘର କଥାକୁ କେତେ ସାର କରୁଛୁ ସହି !
ସେ ପଦ୍ମ ନୟନ ପିଉଲା ?
ଗଳା ମାଳା-ଶିଖିପୁଚ୍ଛ ସୁକୋମଳା – କାମ କୁଣ୍ଡଳା ॥
ଲୁଚିଲେ ତୁ ସହି ପାରିବୁ କି ସେ ସହି ?
ଦୟା ବହି, ଅନାଅଁ ଥରେ
ତୋ ବିନା କି ଦଶା ଲଭିଲା, ପ୍ରୀତ କୁଶଳା ॥



ଶ୍ରୀମତୀ—ଲଳିତେ ! ଏ ଜଗତରେ ତୋ ଠାରୁ ମୋର ଅଉ ବଡ଼
ବନ୍ଧୁ କିଏ ଅଛି ଭଲା ? କିଏ ଅଛି ସହି, ରାଧିକାର ପୋଡ଼ା-
ପ୍ରାଣରେ ଶୀତଳ ଜଳଛିଟା ଦେଇ ଆଶ୍ୱାସନା କରିବ ?
ଯେବେ ଅନୁଚିତ କଥା କିଛି କହିଛି, ମୋତେ କ୍ଷମା ଦେ,
ସେ କଥା ଭୁଲିଯା । ଆ ସହି ! କଦମ୍ବ କୁଞ୍ଜକୁ ଯାଇ
ଦେଖିବା, କେଉଁଠି ସେ 'ମୟୂର-ଚୂଳିଆ' ଆଖି ଛିଟାରେ
ତିନି ଭୁବନ ଭୁଲାଉଛି । ସହି ! ମୋର ଦୋଷ ଧରନାହିଁ !

ଲଳିତା—କିଏ ଦୋଷ ଦେଉଛି ସହି ? ଲଳିତାକୁ କଅଣ ଚିହ୍ନି-
ନାହିଁ ?

ଶ୍ରୀମତୀ—କିଏ କହୁଛି ମୁଁ ଲଳିତାକୁ ଚିହ୍ନିନାହିଁ ? ତୋ ଦୁଃଖ ଦେଖି
ମୋର ଯେ ଧୈର୍ଯ୍ୟ ରହୁନାହିଁ । ଆ ସହି ! କଦମ୍ବ କୁଞ୍ଜକୁ
ଆ !

ଲଳିତା—ସଖିକେ ! ପ୍ରେମ- ଭୋଳ ହୋଇ ସବୁ ତ ଭୁଲିଯାଉଛ !

ଶ୍ରୀମତୀ—କଅଣ ସହି ?

ଲଳିତା – ସହି ! ପାଦରେ ତ ନୂପୁର ଅଛି, କଅଣ ବିଜୟ- ଡିଣ୍ଡିମ ବଜାଇ ବଜାଇ ଯିବକି ?

ଶ୍ରୀମତୀ – ଛି, ଛି, ଏ କଅଣ କହୁଛ ସହି ?

ଲଳିତା – କଅଣ କହିବି ? ଖୋଲି ରଖେଁ, ଲୁଚି ଲୁଚି ନଗରେ କଅଣ ଛଇଳଚନ୍ଦ୍ରର ନବରଙ୍ଗ ଦେଖି ପାରିବ ? ଆଉକି ସେତେବେଳେ ଆମେମାନେ ମନେ ପଡ଼ିବୁଁ ? ଏତିକି ବେଳୁତ କେତେ ଅବିଶ୍ୱାସ – (ନୂପୁର ଫିଟାଇ ବାନ୍ଧୁ ବସିଲେ)

ଶ୍ରୀମତୀ –        (ଲଳିତାକୁ ଉଠାଇ ଗାଇଲେ)

(ବ)

ବିଚକ୍ଷଣୀ ରେ !

ବିନା ତୋ ପ୍ରୀତି କେ ଗତି ଅଛି ଜଗତୀରେ ।୧।

ବୋଲିଦେଲି ସିନା ଗେଲେ ହସି
ବିଶ୍ୱେ ତୋ ସମ କାହୁଁ ବିଶ୍ୱାସୀ
ବାନ୍ଧିବାକୁ ମୋ ମନକୁ ଫାଶୀ

ବିଶେଷରେ ମୋ ହୃଦନ୍ତର ତୋତେ ଜଣା ରେ ।୧।

ବିକେ କଣେ ଯେ ଯାହାକୁ ସ୍ନେହେ
ବଡ଼ ତା ଠାରୁ ଜୀବନ ନୁହେ
ବଳ ତାହାଠାରେ ସିନା ସହେ

ବହୁରଙ୍ଗେ ବୃନ୍ଦଚନ୍ଦ୍ର ଦେଖ ଅଗଣାରେ ।୨।



## ପଞ୍ଚମ ଦୃଶ୍ୟ ।

## ପଥ

ସଖୀଗଣ ପ୍ରବେଶ— ଗୀତ

ଛପି ଛପି ଲୁଚ ଅନ୍ଧ, ଆରେ ଗୈରିବଦକ୍ଷିଣା !

କନ୍ଦ୍ୱଯା ରେ, ରହ୍ୱଯା ରେ,

ମନକଥା ଥରେ ସଜନୀ କାନରେ, କର କର କରୁଣା ॥

ଚୂମ୍ବିଲୁଣି ଫୁଲ ମୁଖଟି ଚହଟିଲା କୁଞ୍ଜବନଟି

ହସିଲାଣି, ବାସିଲାଣି,

ଲାଜେ ଲାଜେ ଚୋରେ, ଆଡେ ଆଡ଼େ ସତେ, ଗୁହ୍ଁଲାଣି ନଳିନୀ ॥

(ପ୍ରସ୍ଥାନ)



## ଷଷ୍ଠ ଦୃଶ୍ୟ ।

## —ଯମୁନା ତୀର—

(କୁଞ୍ଜ ନିକଟରେ ଶ୍ରୀକୃଷ୍ଣ ଉପବେଷ୍ଟ, ମଧୁମଙ୍ଗଳ ପାର୍ଶ୍ୱେ ଦଣ୍ଡାୟମାନ)

ମଧୁ—(ଶ୍ରୀକୃଷ୍ଣଙ୍କ ପ୍ରତି) ଗୀତ

ଶଙ୍ଖ ଯାଇଛୁତ ଅହା ନବୀନ ନୀଳ କୁମୁଦ

ଝାଉଁଳିଛୁ ମୁଖଛବି ତୁଟିଛି ମନରୁ ମୋଦ ।୦।

ଛଳ ଛଳ ନୀଳ ଅକ୍ଷି, ମରମ ବେଦନା ସାକ୍ଷି

ଲକ୍ଷି ତାରି ଏକା ସାକ୍ଷୀ, କାହିଁ ତ କହିବେ କିବା ॥



ସଖା ହେ ! ମନରୁ ଦୁଃଖ ଛାଡ଼, ଏଥର ଯମୁନା ଉଜାଣି ବହାଇ, ଡଙ୍ଗା ଭସାଅ ! ଏ ଉଜାଣିରେ ବି ତମ ଡଙ୍ଗା ଉପରକୁ ନ ଉଠି ଠିକ୍ ତଳକୁ ଯିବ । ଏତେଦିନରେ ମୁଁ ତମ ବଂଶୀର ପ୍ରତାପ ବୁଝିଲି । ସଖା ! ଧରେଇବଟି ବଜେଇବଟି, ଦେଖେଁ, ମୋ ଛାତିଟା କଲବଲ ହେଉଛି କି ନାହିଁ !

( ଗୀତ )

ଅଧରେ ମୁରଲୀ ଧର, ତ୍ରିଭଙ୍ଗୀରେ ଉଭାର,
ବଜାଅ ମୁରଲୀ ଥରେ, ଯିବ ଏ ମନରୁ ଖେଦ ॥

ଶ୍ରୀକୃଷ୍ଣ—ନିତ ପରିହାସ କି ସୁଖ ଲାଗେ ସଖା ? ଟିକିଏ ଭାବିଲ !

ମଧୁ—ଭାବିବି ? ପଛଆଡ଼େ ମୋ ମୁଣ୍ଡଟା କୁଣ୍ଡେଇ ହେଉନାହିଁ ! କେମିତି ଭାବନାର ଢଙ୍ଗ ଦେଖାଇବି ?

ଶ୍ରୀକୃଷ୍ଣ—ଛି !

ମଧୁ—ମୋର ବି ସେଇ ଛି ।

ଶ୍ରୀକୃଷ୍ଣ—କଅଣ ଏମିତି ହେଉଛ ମଧୁମଙ୍ଗଳ ?

ମଧୁ—ମୁଁ କଅଣ ହେଲି ? ତୁମେ ହୁଅ, ବେଶହୁଅ, ମନ ସରସ କର, ଟିକିଏ ଅଡ଼ ଆଖିରେ ଚେରଛି ଗୃହଁ; ଅଧର—କୋଣରେ ଟିକିଏ ହସ ଫୁଟାଅ, ଦେଖିବ ନାଁ ?—

(ଗୀତ)

ପୁରିବ ମନ କାମନା, କାହ୍ନୁ ନକର ଭାବନା
କୁଞ୍ଜେ ଅସୁଛନ୍ତି ରାଇ, ବୁଝି ମୁଁ ଆଇଲି ଭେଦ !

ଶ୍ରୀକୃଷ୍ଣ—ଏଁ, କଅଣ କହିଲ ସଖା ? ସତେ ଏ କୃଷ୍ଣ ମେଘରେ ପୂର୍ଣ୍ଣ ଚନ୍ଦ୍ର ଉଇଁବେ ? ସତ କହ ସଖା, ଏଁ —

(ଶ୍ରୀକୃଷ୍ଣଙ୍କୁ ବ୍ୟଗ୍ର ଭାବରେ ଧରି ବସାଇ)

ମଧ—ଥୟଧର, ଥୟଧର, ତୁନହୋଇ ବସ । ତମ ଶୋଭା, ତମ ବାଙ୍କ ଚାହାଣୀ, ରଞ୍ଜନ ଚୂଡ଼ା, ରଙ୍ଗଧଡ଼ା ଏସବୁ ଦେଖିବାକୁ ଲଳିତାଙ୍କ ସଙ୍ଗରେ ଆସୁଛନ୍ତି । ଏଇଠି ତୁନି ହୋଇ ବସିଥାଅ । ଛପି ଛପି, ଶିକାର ଦେଖି, ଏମିତ ଝଙ୍କରେ ଗଳ୍ପ ଜଗୁଆରୁ, ଝାମ୍ପଟାଏ ମାରିବ ଯେ, ଗଳ୍ପ ଜଗୁଆରୁ, ଏକାବେଳେ ଶିକାର ତମ ନଖ ଭିତରେ, ଗଳ୍ପ ଜଗୁଆରୁ, ଚର ଚର ନ କରିବ୍ୟଂ- କରିବ୍ୟଂ ଧୀରେ ଧରେ । (କାନେଇ) ଶୁଣ, ଶୁଣ, କାହାର କଣ୍ଠ ଶୁଭୁଛି । ସଖା ! ଗଳ୍ପ ଜଗୁଆରୁ, ମଧୁଆର ଚୂଡ଼ା ଦକ୍ଷିଣା ପାଇଁ, ଗଳ୍ପ ଜଗୁଆରୁ, ଠିକ୍ ଏ ମନେ ଥିବ ଯେମିତ; ଗଳ୍ପ ଜଗୁଆରୁ ମୁଁ ଗଲି । ଏଁ ?

(ଗୀତ)

ଅଧ ଅଧରରେ ହାସ, ଫୁଟାଅ ରେ ପ୍ରୀତ ବାସ
ଦେଖାଅ ନେଈ ବିଳାସ ନବର ମନ ବିଷାଦ

(ପ୍ରସ୍ଥାନ)

(ଶ୍ରୀକୃଷ୍ଣ ଲତା ଅନ୍ତରାଳରେ ଗୃହି ରହିଲେ । ଲଳିତା ଶ୍ରୀମତୀଙ୍କୁ ଘେନ ଅନ୍ଧ ନେପଥ୍ୟ ବୃକ୍ଷାନ୍ତରାଳରେ ଲୁଚି, ଦଣ୍ଡାମାଯୂନ ହୋଇ ଶ୍ରୀମତୀଙ୍କୁ ଶ୍ୟାମ ଶୋଭା ଦେଖାଇ ଦେଖାଇ)

ଲଳିତା— (ଭ)

ଭଙ୍ଗୀ ଗୃହୀଁ ! (ଏ ମୋହନର)
ଭ୍ରୁକୁ ନୀଳ- ଭୁଜଙ୍ଗୀ—ଭ୍ରମର ଜୀବସଙ୍ଗୀ ।୦।
ଭାଗ୍ୟ ଏ ଜନ ଅଙ୍ଗ ଜନନର ଠି ସଖି, ଜାଣରେ,
ଭରମି ନଯାଅଚ୍ଛ ମନ୍ମଥ ବାଣରେ

ଭୃଙ୍ଗପାଶକୁ ଛନ୍ଦି ମୋ ଗଳେ, ଉଡ଼େ ପଦକଞ୍ଜ ଶଙ୍ଖ ଧରଣୀ ତଳେ
ଭୂପଣ୍ଡନାରେ,
ଉଲ୍ଲ ମାନୁଛି ଦେଖ ମୁଖ ସୁଧା ମୟୂଖ
ଅଳକ ଛଳ ଅଖ — ଶ୍ରିତ ଯୋଚନାରେ ଶ
ଝଲକେ ଦୃଷ୍ଟିରଙ୍ଗ ସଙ୍ଗରେ,
ଶ୍ରୀ ଦଶେ ଚଳାଚଳ ଗୃହ୍ଣୁ ଚନ୍ଦ୍ରିକା ଭୂଲ । ୧ ।



ପ୍ରାଣ ସଖି ! ଆଜ୍ ଏଣିକି ଲଳିତା ମନେ ପଡ଼ିବ କାହିଁକି ? କେଳି କଦମ୍ବ ତଳେ ବଂଶୀବମୋହନ ଶ୍ୟାମଘନଙ୍କର-ମୟୂର ଚନ୍ଦ୍ରିକା ଶୋଭା ଦେଖି ଦେଖି ମୁଗ୍ଧ ହେଉଥାଅ । ଆଖିରେ, ମନରେ, ପ୍ରାଣରେ ସେ ସୁଧା ପିଉଥାଅ । ମୁଁ ଯାଉଛି, ନବମାଳତୀ ଆଣି ତମର ବେଣୀ ସଜାଇ ଦେବି । ତୁମେ ଏଇଠି ରୂପ-ସୁଧା ପିଉଥାଅ । ଆଜ୍ ପଲକ ପକାଇବ ନାହିଁ । (ଅଗ୍ରସର ହେଲେ)

ଶ୍ରୀମତୀ—ସଖି ! ମୁଁ କଅଣ ଏଠି ଏକା ଥିବି ? (ଲଳିତା ସହିତ ଅଗ୍ରସର ହେବାକୁ ସେ ବାଧାଦେଇ କହିଲେ)

ଲଳିତା — ଶ୍ରୀମତୀ ! ଯେ ରୂପ ଲାଗି ଦିନେ ଯମୁନାରେ ଝାସ ଦେବାକୁ ବସିଥିଲ, ଆଖି ଆଗରେ ତାକୁ ପାଇ ପୁଣି ଏକା, ଦୋକା ଖୋଜୁଛ ? ଥାଅ , ମୁଁ ଆସେ— (ପ୍ରସ୍ଥାନ କରୁ କରୁ)

ଶ୍ରୀକୃଷ୍ଣ — (ଲତା ଅନ୍ତରାଳରୁ ଭେଟି ଆସି) ଲଳିତେ, ଲଳିତେ !

(ଲଳିତା ଶ୍ରୀକୃଷ୍ଣଙ୍କୁ ହାତରେ ଠାରି ଶ୍ରୀମତୀଙ୍କୁ ନିର୍ଦ୍ଦେଶ
କରି ପ୍ରସ୍ଥାନ କଲେ ଓ ଶ୍ରୀକୃଷ୍ଣ ଶ୍ରୀମତୀଙ୍କୁ ଅନାଇଁ
ଅବାକ୍ ହୋଇ ରହିଲେ । ଶ୍ରୀମତୀ ଲଜ୍ଜାବନତ
ମୁଖୀ - ଶ୍ୟାମ ଅଳ୍ପ ଅଗ୍ରସର ହୋଇ
ଶ୍ରୀମତୀଙ୍କ ହସ୍ତ ଧାରଣ କଲେ
ଲଳିତା ପ୍ରଭୃତି ସଖୀମାନଙ୍କର ପ୍ରବେଶ)

**ସଖୀଗଣ—** ଗୀତ

ମଧୁରେ ମନ୍ଦ ମନ୍ଦ ହୋଇ ଗନ୍ଧ ବହ ପ୍ରସଙ୍ଗ
କଦମ୍ବ ନିକୁଞ୍ଜ ସୀମାରେ
ମରନ୍ଦ ସେକେ ଚମତ୍କଳେଟିକେ ଭୂଷିଲେ ଇଷି ମାରେ
ମିଳିନ୍ଦ ଲତା ଦମ୍ଭୂ ବନିତା ବଦନ ସିଞ୍ଚିମାର
ମଣ୍ଡିତ ହେଲା ସେ ବନସ୍ଥଳ ମହା ରଜତ ମହେନ୍ଦ୍ର ନୀଳ
ମୟୂଖ ଶୀର ମଯୁମଞ୍ଜିସୀ ଶପର ହୁଷମା ହେ ।୧।

ମିଶିଲା ଗୁରୁ ଲୋଚନ ବାଣ — ଛନ୍ଦ ମଦନୁ ଲଭି ନାଗର
ମିଳିଲା ଶ୍ୟାମ ଗଜର ଦୁଇ ପଦ,
ମଧୁପ ଯୁବା ଲଭିଲା ଅହା ନବ ସରସୀରୁହ
ମାନସ ଅଙ୍ଗ-ଭେଦ ପ୍ରସଙ୍ଗ ଭଙ୍ଗ ହେଲା ସ୍ପନ୍ଦ,
ମଞ୍ଜୁଳ ଗଲା ଶେଷ ସାତ୍ତ୍ୱିକ ମୃଦୁନସ୍ୱନ ସଖୀଙ୍କ ପାଳ
ମଜାଇ ଦେଲା ଦୁହିଁଙ୍କ ମନ ମହାମୋଦ ପ୍ରବାହ ।୨।



**ଯବନିକା**

# ଷଷ୍ଠ ଅଙ୍କ

## -ପ୍ରଥମ ଦୃଶ୍ୟ-

(ବନବାଳାମାନେ ଆନନ୍ଦରେ ଗୀତ ଗାଇ ବୁଲୁଥିଲେ)

(ଗୀତ)

କୋଇଲି ରେ, ପଞ୍ଚମ ଗାଅ ଅଧୀରେ
ମଳୟ ବହୁ ସଧୀରେ ॥
କାମିନୀ ଗଣ  ସୋହାଗେ ମଣ
ପ୍ରେମିକା ଚୁମ୍ବୁ ମଧୁରେ ।୧।
ଅନ୍ତର ତାର  ପୁଲକେ ଭର
ଲଭିବ ନପ୍ରେମ ମଧୁରେ ।୨।

(ଗାଇ ଗାଇ ପ୍ରସ୍ଥାନ । ରତୀ ଓ ମଦନ ପ୍ରବେଶ)

ରତୀ—ଦେବ ! ଶୁଣୁଥିଲ ତ ଏଇନେ ଏଠି ବନବାଳାମାନଙ୍କର ଗୀତ ?

ମଦନ—ଥିବେ ବୋଧ ହୁଏ ଏଇ ନିକଟରେ କୋଉଠି ।

ରତୀ—ଆପଣ ସେମାନଙ୍କୁ ଭଗବତୀ ପୌର୍ଣ୍ଣମାସୀଙ୍କ ଅନୁରୋଧ ଜଣାଇ, ବୃନ୍ଦାବନ ବସନ୍ତ ସାଜରେ ସଜାଇବାକୁ କହୁଛନ୍ତି ନା ?

ମଦନ—ଦେଖୁନାହିଁ ପ୍ରିୟେ ! କୁଞ୍ଜର ତରୁ, ଲତା, ଫଳ, ଫୁଲ ସବୁଥିରେ କପର ବସନ୍ତର ଆବେଲଖା ଜଡ଼ି ରହୁଛି ।

ରତୀ—(ଚମକି) କହଇ ଶୁଣ ନାଥ, କୋଇଲି !

ମଦନ—( ହସି, ରତୀଙ୍କ ନିକଟସ୍ଥ ହୋଇ ) ଚମକ ଉଠିଲକି ପ୍ରିୟେ ! କୋଇଲିର କୁହୁ ଶୁଣି ?

(ବ୍ରଜବାଳାଗଣ କୁସୁମ ହସ୍ତେ ପୁନଃ ପ୍ରବେଶ)

ଗୀତ

ପ୍ରେମିକ ଅଙ୍କେ କୁହୁ ଆତଙ୍କେ
ପ୍ରେମିକା ମିଶୁ ଛଳରେ । ୩ ।

ମଦନ—(ରତିଙ୍କ ପ୍ରତି) ହେଉଛି ପ୍ରିୟେ ! ଆସିଲେଣିତ ବନବାଳା ମାନେ ।

୧ ମ ବନବାଳା—ଦେବ ! ଆଦେଶ ଅନୁସାରେ ସବୁ କରି ସାରିଲୁ ।

ରତୀ—ଶ୍ରୀମତୀ, ଶ୍ରୀପତିଙ୍କ ଭୋଗର ଉପଯୁକ୍ତ ହେବାଭଳି ସବୁ ହୋଇଛି ନାଁ ?

ବନବାଳାଗଣ— ଗୀତ

ଶୁଣି ନୂଆ ଚୂତବକୁଳ କଳି କଣ୍ଠର କଳି
କମକଣ୍ଠୀ ଗୋପ ଗୋପୀଏ ଶୁଣି ହେଲେ ବିକଳି ॥

ମାତିଛନ୍ତି ରସ ଆମୋଦେ ଶୁଣୁ ଶିଖିଚୂଳିଆ
ନିରୋଳ ନିକୁଞ୍ଜେ ଶ୍ରୀମତୀ ସଙ୍ଗ ବନମାଳିଆ ॥

ଏକାଳେ ବହଇ ମଳୟ;—ଫୁଲବାସରସିକ
ମହକରେ ପୂରି ରହିଛି କୁଞ୍ଜ କାନନଯାକ ॥

ଭ୍ରମର ଗୀତକୁ ମଲ୍ଲିକା ନୃତ୍ୟ କୋକିଳ କୁହୁ—
ତାଳଦିଏ ସତେ ! ନାଗରୀ ଥିବା କହଇ ଉହୁ ॥

ବଜେବର ଫୁଲଶାୟକଧର ବନ୍ଧକ ବନେ
ଘେନି ସଙ୍ଗେ ମନମୋହିନୀ ଦେଖ ସଜ ଆପଣେ ॥

(ସମସ୍ତେ ପ୍ରସ୍ଥାନ)

—୦—

## -୨ୟ ଦୃଶ୍ୟ-

ପଥ—(ଅଦୂରେ ଶଙ୍ଖ ଘଣ୍ଟ, ଘଣ୍ଟା, ମର୍ଦ୍ଦଳ ଧ୍ୱନି)

ଗୋପବାଳକଗଣ — (ଗୀତ)

ନିଶି ହେଲାଣି ପାହାନ୍ତ୍ର ଉଠ ନୀଳ ହାତା
ଉଠ ମୁଖ ଧୂଅ ଛେଜ ପଲଙ୍କ ସୁପାତ ।୦।

ଉପବନ ଫୁଲବାସ— ମିଶା ପବନ ସରସ
ବହିଲାଣି, ଗାଇଲେଣି ପକ୍ଷିଏ ପ୍ରଭାତ ।୧।

ଦୂର ଗହଳ ବନରେ ,ଗାଉଛନ୍ତି କେତେ ମୟୂରେ
ଜାଗିବାକୁ ଗୋପ ଗୋପୀ ସେ କଳ୍ପଲପାଣି ।୨।

ଶମ୍ଭୁଅଟଳେ ଦ୍ୱିଜେ ବସି ହୋଇଗଲିଣି ମନ୍ତ୍ର ଘୋଷି
ବାଜିଲାଣି ଶଙ୍ଖ ଭେରୀ ବାଦ୍ୟ ନାନା ଜାତ ।୩।

ଉଚ୍ଛୁର ହୋଇବ ବେଳ ଭୁଞ୍ଜିବ ଲବଣି ସର
ଆସିଯିବେ ସରା ଗୋଠେ ତାଙ୍କ ସଙ୍ଗ ସାଥି ।୪।

(ଗାଇ ଗାଇ ପ୍ରସ୍ଥାନ)

---

## ୩ୟ ଦୃଶ୍ୟ

-ମଧୁବନ-

(ସଜ୍ଜିତ କୁଞ୍ଜ ଭିତରେ ଶ୍ରୀମତୀ ଓ ଶ୍ରୀପତି — କୁଞ୍ଜଦ୍ୱାରରେ ଥିଲେ ଲଳିତା ଏକା । ଭୋର ହୋଇ ଆସୁଥିଲା — ଶ୍ୟାମ ଯଶୋଦାଙ୍କୁ ଫୁଲ ବେଶ କରୁଥିଲେ । )

ଲଳିତା—(ଉଠି ଅକାଶକୁ ଚାହିଁ) ରାତି ତ ସାହ ଅସିଲା ! କହୁଛ
କଲେ ସ୍ଥାତେ ବିପରୀତ ଫଳିବାକୁ ବିଳମ୍ବ କଅଣ ? ତେଣେ
ଯଶୋଦା କାହ୍ନୁଙ୍କୁ ଖୋଜୁଥିବ । ସେ ଭୟ ରକ୍ଷା ଅଛି ।
ଏଣେ କଠିଳା, କୁଟିଳା ଶ୍ରୀମତୀଙ୍କୁ ଖୋଜିଲେ ଭେଲା
ବୁଡ଼ିବ । କରିବ କଅଣ ? ଏତେ ବେଳଯାଏ କିଛି ଲୀଳା
ଶେଷ ହେଲନାହିଁ ।

ଶ୍ରୀକୃଷ୍ଣ—( ଶ୍ରୀମତୀଙ୍କୁ ବାଜୁପିନ୍ଧାଇ ) ଦେଖ ଧନି, ବାଜୁବନ୍ଧଟା
ଖସି ପଡ଼ୁଥିଲା ଯେ ଶ୍ରୀକର କେଡ଼େ ଅମାନିଆଁ ଦିଶୁଥିଲା ।
ଦେଖିଲ ଧନି ! କେଡ଼େ ସୁନ୍ଦର ଦିଶିଲା ?

ଶ୍ରୀମତୀ—ଶ୍ୟାମ ! କିଏ କହୁଥିଲା ତମକୁ ଏତେ ବେଶ ପିନ୍ଧାଇ
ବାକୁ ? ଛି, ମୋତେ ଦିଅ ( ହାତ ଛଡ଼ାଇଲେ )

ଶ୍ରୀକୃଷ୍ଣ—(ନୁପୁରକୁ ଦେଖାଇ) ଅହୁରି ଦେଖିଲଣି ନା ନୁପୁରକୁ ?
କେତେ ଦୂରରେ ପଡ଼ିଛି ! ଆଣେଁ ଧନି ! ଚରଣ ଅସୁନ୍ଦର
ଦିଶୁଥିବ । (ନୂପୁର ଆଣି, ବକ୍ଷରେ ଲଗାଇ) କେଡ଼େ
ଭାଗ୍ୟବାନ୍ ତୁ ନୂପୁର ! ତୋ ଭାଗ୍ୟ ମୋଠାରୁ ବେଶି ।
ଧନ, ଯାହ ଯେ ଚରଣ ସେବାଲାଗି ଶ୍ୟାମ ଶଯ୍ୟାକେ, ସ୍ୱପନେ
ଲାଳାୟିତ, କେଡ଼େ ଭାଗ୍ୟ ତୋର ସତେ ! ଅହରହ ସେ
ଚରଣ ମଣ୍ଡନ କରୁଛୁ ! ତୋତେ ଚୁମ୍ବନ ଦେଇ ମନପ୍ରାଣ
ଧନ୍ୟ ହେଉ । (ନୂପୁର ଚୁମ୍ବନୋଦ୍ୟତ ହେଲେ ଶ୍ରୀମତୀ
ଉଠିଆସି, ଶ୍ରୀକୃଷ୍ଣଙ୍କର କରଧରି ବାଧାଦେଲେ)

ଶ୍ରୀମତୀ—ଛି, ଛି, ଏ କଅଣ କରୁଛ ଶ୍ୟାମ ? ମୋତେ କଅଣ ଏକା-
ବେଳକେ ଅପରାଧିନୀ କରିପକାଇବ ? ଛି, ଛି, ଛାଡ଼,
ନୂପୁର ଛାଡ଼ ।

ଶ୍ରୀକୃଷ୍ଣ — ଅନୁମତି ଦିଅ ସଖି ! ଚରଣରେ ମଣ୍ଡିଦିଏଁ ।

ଶ୍ରୀମତୀ — (ଚମକି) ଓଃ, ଏ ତ ଅଦ୍ଭୁତ ମହାପାପ ! ଶ୍ୟାମ ! ମୋତେ ଏତେ ଅପରାଧରେ ବୁଡ଼ାଅ ନାହିଁ ।

ଶ୍ରୀକୃଷ୍ଣ — (ଗୀତ)

—'ଘ'—

ଯୋଷାବର ହେ !
ଯଥାର୍ଥରେ ଜାଣ ମୁଁ ତୋହର ରେ
ଯାମଳ-ଭୂଧର-ନିଭ ପୟୋଧର ମଦଦନ୍ତୀଆଁ ସୁକର ରେ ।୦।

ଯାବକ ତୋ ପଦକଞ୍ଜ ଉସମଦ ଗଜଗତି ମୋ ଶେଖର
ଯତୀନ୍ଦ୍ର ସମାଧି ଖଣ୍ଡନୀ ତୁ ନିଧି ମୁଁ ରଙ୍କମାନଙ୍କ ବର ରେ ।୧।

ଯମକ କି ତୁହି ପର୍ଶ୍ଚିନ୍ତେମୁହିଁ ମୋ ମହା ଶୁଭ ଦଶାର
ଯତ୍ନେ ସମ୍ପାଦିବା ଚିନ୍ତାମଣି ଅବା ମୋ କରେ ହେଲୁ ସୁସାର ରେ ।୨।



ଶ୍ରୀମତୀ—ନଟବର ! ଗର୍ବ ମୋର ଯେତେ ଯେତେ, ମାନ ମହତ୍ତ୍ୱ, କୁଳଶୀଳ, ସବୁ ଶ୍ୟାମର । ଅଦେୟ କିଛି ନାହିଁ । କିନ୍ତୁ ଶ୍ୟାମ ! ମୋତେ କ୍ଷମା ଦିଅ । ତୁମର ପଦ ସେବକାର ପାଦରେ ନୂପୁର ପିନ୍ଧାଇ ଦେବାକୁ ମୁଁ ତୁମ୍ଭଙ୍କୁ ଅନୁମତି ଦେଇ ପାରିବି ନାହିଁ, ମୋର ଏତିକି ଭିକ୍ଷା । ଶ୍ୟାମ ! ମୋତେ କ୍ଷମା କର ।

ଶ୍ରୀକୃଷ୍ଣ—ସଖି ! ଯଦି ସେଥିରେ ଅପରାଧ ହୁଏ, ତେବେ ଇନ୍ଦ୍ର, ଚନ୍ଦ୍ର ସାକ୍ଷରେ ମୁଁ ତାହା ଆଦରରେ ବରଣ କରିବାକୁ ପ୍ରସ୍ତୁତ ଅଛି । ଥରେ ଅନୁମତି ଦିଅ ସଖି, ମନୋବାଞ୍ଛା ପୂର୍ଣ୍ଣ କର ।

ଲଳିତା— (କୁଞ୍ଜ ଦ୍ୱାରରେ ଗୀତ ଗାଇଲେ)

'ର'

ରସାଳସା ରେ !

ରସି ପୁଣି ଏକ ଲୋକହସା ରେ ? ।୦।

ରକ୍ତିମା ଚୁମ୍ବିଲ୍ଲ ଇନ୍ଦ୍ର ଆଶାରେ
ରକ୍ତୋତ୍ପଳ ପ୍ରଫୁଲ୍ଲ ହେଲେ କାସାରେ ॥

ରତିନାଥ ସମର ପ୍ରଶଂସାରେ
ରମଣୀ କେ ନ ରସନ୍ତି ସଂସାରେ ॥

ରସନ୍ତ ରସିକେ ସିନା ନିଶାରେ
ରଜନୀ ଶେଷରେ ଏକ ଦଶାରେ ॥

ରହୁନା ଝପଣ ଆଜ ରସାରେ
ରସାନ୍ଧୁ ଲଭାକୁ ଖସା ରେ ॥



ଶ୍ରୀମତୀ—(ଚମକି) ଶୁଣ ଶ୍ୟାମ ! ରାତି ପାହି ଗଲାଣି । ଛାଡ଼ ମୋତେ, ମୁଁ ଯାଏଁ । ତୁମେ ତ ମୋର ଶାଶୁ ନଣନ୍ଦଙ୍କର ଦାଉ ଜାଣିଛ ! ମୋର ଆଜ ମୁହିଁ ରହିବ ଠିକ ? କୁଞ୍ଜ ଦ୍ୱାରରେ ଲଳିତା ଚେତାଇ ଦେଲଣି ପରା ! ଯାଅ କାହ୍ନୁ ! ବନ ପଥରେ ଘରକୁ ଗୃହକୁ ଯାଅ, ମୋତେ ବଦାୟ ଦିଅ । (ଶାଢ଼ୀ ଦେଖି, ଚମକି) ଆରେ ! ଏ କଅଣ, ମୁଁ କପରି ଯିବି ଶ୍ୟାମ ? ଏ କଅଣ କରିଛ ଶ୍ୟାମ ? ଏ ତ ମୋର ଶାଢ଼ୀ ନୁହେଁ । ନଟନାଗର ! ଅନୁଗ୍ରହ କର ମୋତେ, ଦାଣ୍ଡରେ ଆଜ ଲୋକହସା କରାଅ ନାହିଁ । ଶ୍ୟାମ !

ଶ୍ରୀକୃଷ୍ଣ—ଧନ ! ମୋର ଦୋଷ କଅଣ ? ମୁଁ କଅଣ କଲି ? କାହିଁ ମୁଁ ତ କିଛି ଜାଣିନାହିଁ; ଏ କଅଣ ତମର ଶାଢ଼ୀ ନୁହେଁ ?

ଶ୍ରୀମତୀ—ଶ୍ୟାମ ! ଛଳଥାଉ, ଦସ୍ୟୁଙ୍କର !

ଲଳିତା—ସଖି ! ଅଗରୁ ଆମ୍ଭେମାନେ କେତେ ହିତକଥା ନକହୁଁ ?
ଶୁଣିନାହିଁ । ଯଦ ବା ଗୋଡ଼ ଖସାଇ ଦେଇଛ, ଏବେ ମଧ୍ୟ
ବେଳ ଅଛି, ଅମ୍ବ-ଋଯାଙ୍କର-ଯେମିତ ଋଗାଙ୍କ-ହସା
ନହୁଅ ।

ଶ୍ରୀମତୀ—(ଉଠି ଶ୍ରୀକୃଷ୍ଣଙ୍କ କରଧରି) ଶ୍ୟାମ ! ଆଜ୍ଞ କେତେ ହଟ-
ହଠା କରିବ ଭଲ ? ଦଅ ।

ଶ୍ରୀକୃଷ୍ଣ—କାହିଁ ? ମୁଁ ତ କଛୁ ଜାଣିନାହିଁ ।

ଶ୍ରୀମତୀ—(ହସି) ନାଁ, କଛୁ ଜାଣିଥିବ କ ?

[ଲ]

ଲୀଳାନିଧି ହେ !
ଲାଜ ମୁଁ ଗଲିଣି ସଢ଼ି
ଲୁଚାଇଛ କାହିଁ ଶ୍ୟାମ ହେ ଦଅ ମୋ ଲଗି ଶାଢ଼ୀ

ଲଭି ତୁମ୍ଭଙ୍କୁ ପ୍ରାଣବନ୍ଧୁ କରି, ଲୋକହସାରେ ଯେବେ ଯିବ ସରି
ଲଯିବ ଯେବେ ପାଇ ନନ୍ଦାଦାଉ,
ଲାଗିଲ ଆପଣଙ୍କୁ କେହୁ ଆଉ । ୧ ।

ଲକ୍ଷ ଲକ୍ଷ ଗୁଣ ଅଛନ୍ତି ମୋର, ଲଲାମ ଆଦ ଭୂଷା ସଜ କର
ଲିଭୁଥିବ ଭୁରୁ ମଧ୍ୟ ତିଳକ,
ଲେଖିଦଅ ବେଗେ ନଦେଖୁ ଲୋକ । ୨ ।

ଲୋଭି, ଶ୍ରୀଭୁଜବନ୍ଧ ଶିଥିଲାଅ, ଲତା ଗହଳେ ଗହନେ ଫୁଲାଅ
ଲାଗିଛୁ ଲକ୍ଷା ମୁକୁଟ ଶିଖଣ୍ଡେ,
ଲାଜ କଥା ଲୋକେ ଦେଖିଲେ ବାଟେ । ୩ ।

ଲଗାଇଛ ଦୃଷ୍ଟ ଯେଉଁ ରସରେ, ଲୁଚିବ ସିନା କାଲି ପ୍ରଦୋଷରେ
ଲଙ୍ଘି ଅଛିତେ ଥିବା କୃପାସିନ୍ଧୁ,
ଲକ୍ଷ୍ୟ ଅଛି କେତେ ହେଲ ହେ ବନ୍ଧୁ । ୪ ।



(ଏତକବେଳେ ସଖୀମାନେ ଜଳଧର ହସ୍ତେ ପ୍ରବେଶ ହୋଇ
ପ୍ରଥମରେ କୁଞ୍ଜଦ୍ୱାରସ୍ଥା ଲଳିତାଙ୍କୁ ଦେଖି, ପଚାରିଲେ)—

ବିଶାଖା—ଭାଉଁଟେଗୋ ! ତୁମ ଶ୍ରୀମତୀ କାହାନ୍ତି ? ଦୁଇହିଁ କଅଣ ନିଶ୍ଚି
ପାହାନ୍ତି ଘରୁ ଅସିଛ ନାଁ। କଅଣ ସ ? ଅମେମାନେ ଯମୁନା
ଗାଧୋଇ ଯିବାକୁ ଖୋଜି ଖୋଜି ଅସିଲୁଁ ଯେ, ଅଜ
ଭେଟ ପାଏ କଏ ?

(ସଖୀମାନଙ୍କ କଣ୍ଠଶୁଣି ଶ୍ରୀକୃଷ୍ଣ କୁଞ୍ଜଗଡ଼ ଶୀଘ୍ର ଗୁଳ୍ମରେ ଲିଚିଲେ
ଶ୍ରୀମତୀ କୁଞ୍ଜରେ ଅଧୀର ହୋଇ ବସନ ଭୂଷଣ ସମ୍ଭାଳୁ ଥିଲେ ।)

ଲଳିତା—ହଁ, ଟିକିଏ ଅଗରୁ ଶ୍ରୀମତୀଙ୍କ ସଙ୍ଗରେ ଫୁଲ ତୋଳିବାକୁ
ବାହାରି ଅସିଥିଲୁ । ଏବେ କେତେ ଦିନ ହେଲା ଦେଖୁ
ନାହିଁ, କାହ୍ନୁ ତାଙ୍କ ସାଥିମାନଙ୍କୁ ନେଇ ବଡ ହୁରକୁଲ
କରୁଛନ୍ତି । ଟିକ୍ତୁ କାମ ନାହିଁ--ତାଙ୍କ, ଆମମାନଙ୍କ ବାଦକୁ
ପଶି ଗଛ, ଡାଳ, ଲତା ଦେବ ଭାଙ୍ଗି ସବୁ ଫୁଲ ନେଇ ପାହାଡ଼
ପଥରକୁ ବେଶ କରୁଥିବେ । ଛି, କି ବାଦ ଏ କହନା
ଦେଖି ? ତାଙ୍କୁ କହିବା ? ରଜା ପୁଅ ତ ସେ ! କହିଲେ
ଦୋଷ, ନକହିଲେ ଦୋଷ ।

ଧନିଷ୍ଠା—ତେବେ ଶ୍ରୀମତୀ କାହାନ୍ତି ?

ଲଳିତା—ମୁଁ ଏ ପାଖରେ ଫୁଲ ତୋଳୁଥିଲି, ସେ କୁଞ୍ଜ ଅରପାଖକୁ
ଫୁଲ ଖୋଜିବାକୁ ଯାଇଛନ୍ତି ।

(ଶ୍ରୀମତୀ ତର ତର ହୋଇ ପ୍ରବେଶ)

ବିଶାଖା—ସଇ ! ଆମ୍ଭମାନଙ୍କୁ ଛାଡ଼ିଦେଇ, ଲଳିତା ସାଙ୍ଗରେ ଆସି
ଯାଇଁ କେତେ ଫୁଲ ତୋଳିଲଣି ଦେଖେଁ ?

ଧନିଷ୍ଠା—(ଶ୍ରୀମତୀଙ୍କୁ ଚୁମ୍ବି) ମ, ମ, ଫୁଲ କାହିଁ ମ ? ଦେଖିଲଣି
ସଖି ! ଏ ସବୁ କଅଣ ମ ବିପରୀତ କଥା ? ସଖୀର ଆମର
ଆଜି ଏ କି ବେଶ ମ ?

ବିଶାଖା—(ହସି ମୁହଁରେ ଲୁଗା ଦେଇ) କାହିଁ ଦେଖେଁ ? (ଚୁମ୍ବି)
ଓହୋ, ବୁଝି ପାରିଲୁନାହିଁ କି ସଖି ? ଏଇଟା ପରା ଫୁଲ-
ତୋଳା ବେଶ । ଏ ବେଶ ନୋହିଲେ କି କୁସୁମ ନାଗର
ବଶହେବେ ? (ସମସ୍ତେ ହସି ଗଡ଼ାଗଡ଼ି ହେଲେ)

ସମସ୍ତେ—ହଉ ହଉ, ଚାଲ ଚାଲ, ଜଣା ଗଲା ଯେ—

[ବ]

ଶଠକ ବେଶ ମଞ୍ଜୁଳା ରେ ବାଳା, ଶବଧ ଗୁରୁସ୍ୱଶୀଳା,
ଡମ୍ବରୀ ଅଙ୍କେ ଏକାକୀ ଏକାକୀ ହୋଇ ରତ୍ନ ଫୁଲତୋଳା ଟେ,
ଚଳାଏ କୁଶଳାରେ, ବଲ୍ଲୀ-ନିଳୟୁ ବିହାର ଲୀଳା । ୧ ।

ଶ୍ରୀମତୀ—ନାହିଁ ସହି ! ଆସିଲି ଯେ ଫୁଲ ତୋଳି- ବାଉ ଫୁଲ ସବୁ
କିଏ ତୋଳି ନେଇଛୁ, କିଏ ଭାଙ୍ଗି ଦେଲୁଣି ଆମେ
ଆସିଲା ବେଳକୁ ।

ଚମ୍ପକଲତା—କାହିଁ ଆସିଲ ବେଳକୁ ଗୋ ? ଆମେ ନା ତୁମେ ?
ଭାଙ୍ଗି ଦେଲଣି ନୁହେଁ ଯେ—ଭାଙ୍ଗି ଗଲଣି ଆମେମାନେ
ଆସିବା ବେଳକୁ । ନାଁ ? ଆମେ ସବୁ କଅଣ ଏତେ
ପର ହେଲୁଁ ?

ସମସ୍ତେ — ଗୀତ

ବାଳକାନ୍ତଁ ବାସ ପଶ୍ଚରେ ବାଳା, ବର୍ଣ୍ଣିଥିଲ୍ଲ ଅନୁସଙ୍ଗ,
ବିଲକ୍ଷଣ ବନଭଣ୍ଡାର ଉତ୍ସବ ବେଳେ ଯା ଦେଲ୍ଲ ପାଶୋର ରେ
ବତାର ତ ଗୋର ରେ, ବଶେଷ୍ଟ କାହ୍ନିଁକ ପ୍ରୀତ ଅଟେ । ୨ ।

ଶ୍ରୀମତୀ — ନାଇଁ ସଖୁ ! ପର କର ନାହିଁ ତ । ଟିକିଏ ଗୁଡ ଥାଉଁ ଥାଉଁ ଅଧିକ ଫୁଲ ପାଇବା ଆଶାରେ ଅସିଲ୍ ଯେ, ପରିଶ୍ରମ ମାତ୍ର ସାର ହେଲ୍ଲା । ଫୁଲର ନାଁ ଗନ୍ଧ ନାହିଁ ।

ବିଶାଖା — ସେ କଥା କଅଣ ଆମେମାନେ ଆଉ ଜାଣି ପାରୁ ନାହୁଁ ? ଫୁଲ ତୋଳାର କଣ ସତରେ ନାଁ ଗନ୍ଧ ଅଛୁ କି ? ବାକି ଆମମାନଙ୍କୁ ମଧ କାଧୁଛି ସଖୁ, ମିଛରେ ତମ ପରିଶ୍ରମ ଟା ଯାହା ସାରହେଲ୍ଲ ?

ଧନଷ୍ଠା — ହଁ, ହଁ, ସେତିକି ପରିଶ୍ରମ ନ କରିଥିଲ ଏ ସବୁ [ବେଶକୁ ଠାରି] ହୁଅନ୍ତା କିପରି ? ଏ ସବୁତ ଖୁବ୍ ପରିଶ୍ରମର ଲକ୍ଷଣ !

ଶ୍ରୀମତୀ — [ବେଶକୁ ଗୃହିଁ, ଚମକି] କାଇଁ, କଅଣ ? କଅଣ ଏମିତ ସବୁ ମତେ କହୁଛ ଆଜ୍ଞ ?

ସମସ୍ତେ — କିଛୁ ନାହୁଁ ଯେ : —

( ଗୀତ )

ବ୍ୟସ୍ତ ହୋଇ ଶଙ୍କମାନ୍ତୁ ରେ ବାଳା ! ବ୍ରଣଗଣ ତ ଦଶୁଛୁ
ବିମ୍ବାଧରୁ ନବପଲ୍ଲବ ମାନଙ୍କୁ ବାଣ୍ଟିଲ୍ଲକି କହୁ କହୁ ରେ
ବଶୁଥ ହୋଇଛୁ ରେ, ବାସ ପିନ୍ଧିଥାଉ ପସ୍ତ କାହୁଁ ? ॥

ଲଳିତା — ଛୁ, ସଖି ! ମିଛଟାରେ ଏତେ କଥା କହୁ ଆଉ ସଖୀଙ୍କି ଲଜେଇ ବୁଝାଅ ନାହୁଁ ।

ବିଶାଖା—ନାହିଁ ମ, ଏ ତ ଜନ୍ମା ଲାଜ କଥା ନୁହେଁ, ଯମୁନାରେ ବୁଡ଼ ଦେବାକୁ ଡାକୁଛୁଁ ସିନା ! ଲାଜରେ ବୁଡ଼ିବ କଅଣ ମ ?

ଶ୍ରୀମତୀ—ଯାଃ ! ତୁମେମାନେ ବଡ଼ ଦୁଷ୍ଟ ହେଲଣି ।

ଧନିଷ୍ଠା—ସତେ ସହି ! ତମ ରଙ୍ଗ ଢଙ୍ଗ ଦେଖି, ଏତେବ ଚାଟେଶା ହୋଇ ଆମେସବୁ ଦୁଷ୍ଟ ପାଲଟି ଗଲୁଣି ମ !

ଶ୍ରୀମତୀ—କି ରଙ୍ଗ ଢଙ୍ଗ ମୋର ?

ସମସ୍ତେ—ତମ ନାଉଁଣ୍ଡ ପଣିଆଁ ମ—

(ଗୀତ)

ବଣ୍ଟୀଙ୍କ ଅନାଇଁ ହୃଦୁରେ ବାଳା, ରାସରେ ଗ ଉସ୍ତ କରୁ
ବୃନ୍ଦେକ ଆଜ ଶୁଣି ଆସିଲୁଁ ତୁ ପୁଣି ପ୍ରତ ଗତ ଆସି ଘରୁ ରେ
ଲୋକେ ସଂଯୁରୁ ରେ, ବଡ଼ ବିଷମ, ଏ ଯା ନ ଡରୁ ॥

( ଶ୍ରୀମତୀଙ୍କୁ ଘେନି ହସି ହସି ପ୍ରସ୍ଥାନ )



## -ଚତୁର୍ଥ ଦୃଶ୍ୟ-

ବ୍ରଜ-ବନପଥ

( ବିକ୍ରଣ୍ଠିତ ମଧୁମଙ୍ଗଳ ପ୍ରବେଶ ହେଲେ )

ମଧୁ—(ବିରକ୍ତ ଭାବେ) ଗୀତ

ସେ କଳାକାହ୍ନୁକୁ ଯେତେ କହିଲି ଭଲକୁ
ନ ଶୁଣିଲା ମୋ ବୋଲକୁ (ଛଇଲ କହ୍ନା) ।୦।

ନଷ୍ଟି ଗଳ୍ପ ପାହୁ    କାହୁଁ ଦେଖାନାହୁଁ
ରାତ ସାରା ମୋର    ଗଳ୍ପ ଶୁହୁଁ ଶୁହୁଁ
ଜାଣିବେ ଯେବେ ସେ    ନନ୍ଦ ରାଜା ଅବେ
ଭାଙ୍ଗି ଦେବେ ତା ଗୋଲକୁ ॥

ବ୍ରଜ ଯାବ ହଣ୍ଠା-    ପଡ଼ନ୍ତୁ କାହ୍ନୁଣ୍ଠା
ଦହି ଦୁଧ ଖିଆ    ନାପଟ ନଗୁରଣ୍ଠା
ଗୋପୀ ମାନ ନଥା    ବଡ ଅମାନିଆଁ
ଖେଳ କରନ୍ତୁ ଗଲକୁ ॥



( ଅନ୍ତରେ ବଂଶୀ ଶୁଣି ଚମକି ) ଏ କଅଣ ବଂଶୀ ନାଁ ? (କାନେଇ) ହଁ ତ ! ଆସିଗଲେ ସଖା, ଟିକଏ ଛପିପଡ଼ି ଭଙ୍ଗୀ ଦେଖେଁ । ( ଶୋଇପଡ଼ିଲେ )

ଶ୍ରୀକୃଷ୍ଣ—(ଏଣେତେଣେ ଗୁହୁଁ ପ୍ରବେଶ) ବେଳ ତ ବେଶୀ ହୋଇ-ଗଲା ! ଏତେବେଳେ ବନ୍ଧୁଙ୍କୁ ପାଇଲେ ସୁବିଧା । ତାଙ୍କୁ ସଙ୍ଗରେ ନେଇ ଘରକୁ ଗଲେ ମୋର ଆଉ ଚିନ୍ତା ରହନ୍ତା-ନାହିଁ । ଏତେବେଳେ କଅଣ ବନ୍ଧୁଙ୍କୁ ଦେଖା ମିଳିବ ?

(ପଛରୁ ମଧୁ ଜୋରରେ ହାଇ ଓ ଫୁଟ୍କି ମାରିଲେ)

ଶ୍ରୀକୃଷ୍ଣ—(ଚମକି) କିଏ, ସଖା ! ଉଠ, ଉଠ, ଏଠିଣ୍ଡାରେ ଏମିତ କାହିଁକି ପଡ଼ିଛ ? ଏ କଅଣ ? (ଉଠାଇଲେ)

ମଧୁ—(ଆଖି ମଳି) ଓଃ, କିଏ ତୁମେ ?

ଶ୍ରୀକୃଷ୍ଣ—ମୁଁ ସଖା ଚିହ୍ନ ସଖା ! ଏଠି ଏମିତ କେମିତି ! କଅଣ କରୁଥିଲ ?

ମଧୁ— ଦେଖୁଥିଲି—(ଆଖିମଳୁଥିଲେ) ଦେଖୁଥିଲି ସ୍ୱପ୍ନ, ଗୋଟାଏ
ଅଭୁତ ସ୍ୱପ୍ନ, ବଡ ଡର ଲାଗିଲା ମୋତେ ।

ଶ୍ରୀକୃଷ୍ଣ— କଅଣ ଦେଖିଲ ସଖା ?

ମଧୁ— ବାହୁଲ ସବୁ ସ୍ୱପ୍ନ !

ଶ୍ରୀକୃଷ୍ଣ—କି ସ୍ୱପ୍ନ ସଖା ?

ମଧୁ—ଜଣେ କଳାହୋଇ, ଗୋଟାଏ ବଡ଼ ଚୋର, କୁଞ୍ଜଭିତରେ
ପଶିଛି—ନା—ପଶିଥିଲା । ଘା ଦାଦ ମୁଣ୍ଡ ସବୁ-ଓଃ ସଖା !
ଆଉ କହି ପାରିବନାହିଁ । (ଥରି) ଛାତି ଥରୁଛି, ଆଖି ମୁଦ ଦଏଁ ।

ଶ୍ରୀକୃଷ୍ଣ—[ଆଖି ଝିମାଇ] ନାହିଁ ସଖା ! ଡର ନାହିଁ, ମୁଁ ପରା ତମ
ପାଖରେ ଅଛି ?

ମଧୁ —ତୁମେ ? କିଏ ତୁମେ ?

ଶ୍ରୀକୃଷ୍ଣ—ମୁଁ ପରା ତମ ସଖା ?

ମଧୁ—ଆଉ ଦେଖେଁ [ଆଖି ମେଲାଇ, ଚମକିବା ପରି ଦୂରକୁ ଯାଇ]
ଆରେ ମୋ ବୋପାରେ, ଏ ତ ସେଇ ଚୋର ଲୋ ବୋପା,
ମୋତେ ମୋ ସଖା ବୋଲି ଠକିବାକୁ ଆସିଛି ! ହେ ହରି,
ହେ ହରିବ !

ଶ୍ରୀକୃଷ୍ଣ—[ମଧୁଙ୍କୁ ଧରି] ଛି, ଛି, ସଖା ! ଏମିତ କଅଣ ହେଲ ?
ବଣ ଭିତରେ କୋଉଠି ଭୂତ ଦେଖିଲକି ? ମୁଁ ପରା ତମ
ସଖା ? ଅନା, ଖୋଜୁଥିଲି, ଦେଖ !

ମଧୁ —[ଛଳେଇ] ଦେଖ ! କଅଣ ଦେଖିବ ? ସେଇ କୁଞ୍ଜବନର
ଚୋରଟା ତ ! ମୋ ସଖା କାହାନ୍ତି ? ତୁମେ କାହିଁକି ମୋ
ସଖା ହୁଅନ୍ତ ?

ଶ୍ରୀକୃଷ୍ଣ — ନାହିଁ ସଖା ! ମୁଁ ସତ କହୁଛି ।

ମଧୁ—ସତ କହୁଛ ? କାହିଁ ମୋ ଗୁଣ ପଟକଇଲ ଦେଖି ?

ଶ୍ରୀକୃଷ୍ଣ—ତମ ଗୁଣ !

ମଧୁ— ଏଥର ଦମ୍ଭ ପାଇଲ । (ଗୁହ୍ଁ, କୁଣ୍ଢାଇ, ହସି) ଏଁ । ହଁତ ! ଏଁ, ସତେତ ତ ! — ଏଁ, ଚନ୍ଦ୍ରକାନ୍ତ ! ମୁଁ ମନେକଲି ସପନର ସେଇ ଚୋର ବୋଲି । ତୁମେ ସଖା, ଏତେବେଳେ, ଏତେ ବେଗେ ନଦରୁ ଉଠି, ମାଆ ଯଶୋଦାଙ୍କ କୋଳ ଛାଡ଼ି, ଏତେଣେ ବଣଦା ଭିତରେ ଏକୁଟିଆ ଆସିଥିବ ବୋଲି ମୋର ମୋଟେ ବିଶ୍ବାସ ହେଲା ନାହିଁ । କୁଆଡ଼େ ଏମିତ ଆସିଥିଲ ସଖା ?

ଶ୍ରୀକୃଷ୍ଣ — ଜାଣିନାହିଁ ସଖା ! ଗୋରୁ ଗାଈତ ବେପାର ! ତାଙ୍କର ଲଗି ଛଟପଟ ।

ମଧୁ — ହ, ହ, ତା ନୁହେଁ କଅଣ ? ନଜ ବେଭାରଣ୍ଠା ତ ଫେର୍ ଛାଳା ରକ୍ଷିବାକୁ ହେବ ! ଓଃ, ବଡ଼ ପରିଶ୍ରମ ପଡ଼ୁଥିବ । ହଉ, ହଉ, ପାଇଲ ନାଁ ?

ଶ୍ରୀକୃଷ୍ଣ — (ଇତସ୍ତତ ହୋଇ) ଉଁ —

ମଧୁ — ଉଁ, ଆଁ, କଷ୍ଟ ଦରକାର ନାହିଁ । ବୁଝିଲି ବୁଝିଲି ଯେ—

( ଶ )

ଶ୍ୟାମ ଶିଖଣ୍ଡ ଚୂଳ,<br>
ଶ୍ରମକ ଆଜ ଯାବେ ହେଲା ସଫଳ ହେ । ୦ ।

ଶବଶ ନଦ୍ରା ବିନା ଗଳାଙ୍କ ମୂଳ,<br>
ଶମ୍ବର-ପର-ପୁର କଲଙ୍କ ଜୂର ? । ୧ ।

ଶଅଗ ବେଶ ଭଙ୍ଗା ଏଥର ଆଜ,<br>
ଶରଦ ଚନ୍ଦ୍ର ଚୂଡ଼ ନାହିଁକ ଲାଜ । ୨ ।

ଗୀତ

ଶିଶୁ ହେଲେହେଁ ତୁମ୍ଭେ କଲଭ ସର
ଶେଷ ଯଶୋଦା ଚିତ୍ତ ଓଦଲ ଯା ପର । ୩ ।

ଶ୍ରୀକୃଷ୍ଣ—ଛି, ସଖା ! ମୋଠାରେ ଅବିଶ୍ୱାସ କରନ୍ତି ?

ମଧୁ—ହଁ, ହଁ, ତୁମେ କଅଣ ସେ ପାଠ ଜାଣିନ୍ଥ ହେଲେ ଜାଣିଛ କି ?

(ଗୀତ)

ଶିଶୁପ ମାଲା ଦଳଦେଇ କୁଠାରେ
ଶଙ୍କା ନକଲ ସଖାମାନଙ୍କ ଠାରେ । ୪ ।

ଶ୍ରୀକୃଷ୍ଣ—ନାଇଁ ସଖା ! ସେସବୁ କିଛି ନୁହେ । ସୁନ୍ଦର ଚନ୍ଦ୍ର କିରଣ ପଡ଼ିଥିଲା, ଯମୁନାର ନୀଳ ଜଳ ଝଲମଲ କରୁଥିଲା, ଏଣେ ଗୋଟି ଗୋଟି ଲହରୀ ଧୀର ପବନରେ ନାଚ କରୁଥିଲା, ଦେଖି ମନ ଭୁଲିଲା ନାହିଁ । ଯମୁନା ତଟରେ ବୁଲି ବୁଲି ତ ଘରେ ଯାଇ ଅନିଦ୍ରା, ଆଉ କିଛି ମନେ କରନାହିଁ !

ମଧୁ—ବା, ବା, ସଖା ଆମର ଏତେବେଳେକେ ସତ କହୁଛୁ—

(ଗୀତ)

ଶରମପ୍ରଦ ଆଜ ସରକ ହେଲା
ସମନକ୍ଷଣ ତଟ ଅଟବୀ ବୁଲା । ୫ ।

ଶ୍ରୀକୃଷ୍ଣ—ଯାଃ, ସଖା ! ତୁମେ ତ ଖାଲି ପରିହାସ କରିବ !

ମଧୁ—ନା, ନା, ପରିହାସ ନୁହେ ଯେ, ଏସବୁ କେଉଁଠୁ କାହିଁକି ହେଲା ? ସତ କହୁଛି ଦେଖି, ତମକୁ ଗୋଟେ ଗୁଣ ଅଛି, (ମୁଣ୍ଡ ଟେକି) ଏସବୁ କଅଣ ?

ଶ୍ରୀକୃଷ୍ଣ—(ଅଣ୍ଡର୍ଯ୍ୟ ହେବାପରି) କୋଉକଥା ସଖା ?

ମଧୁ—କୋଉକଥା ? କଅଣ କହିବି ସଖା, ପୂର୍ବେ କୋଥଳାଏ ଛାଉ ଆସିଲା ତ !

ଶ୍ରୀକୃଷ୍ଣ—କାହିଁକି ? କଅଣ ହେବ ?

ମଧୁ—କିଛି ନାହିଁ ଯେ, ଦର୍ପଣଟା ଥିଲା ସେଥିରେ। ଦେଖି ଥାଆନ୍ତ, ଜାଣି ଥାଆନ୍ତ—

ଶ୍ରୀକୃଷ୍ଣ—କଅଣ ସଖା ?

ମଧୁ—ଏଇ—ତମ—ବେଶଟା।

[ଗୀତ]

ସ୍ଥିର ସୁନ୍ଦର ଦର୍ପଣ ଯାବକ ବୋଲେ
ଶରଣ ବୋଲି କି ପଶିଲ ପା ତଳେ ! ୭।

ଶ୍ରୀକୃଷ୍ଣ—ସଖା ! ତମ ପରିହାସ ଆଉ ମୁଁ ସହି ପାରିବି ନାହିଁ। ମୁଁ ଯାଉଛି—(ଅଭିମାନରେ ଫେରିଲେ)

ମଧୁ—ଦେଖ, ଦେଖ ଦେଖିଛି ସଖା ! ସେ ଅଭିମାନ, ସେ ତର, ସେ ତଙ୍ଗ ତମର ରଙ୍ଗ। ଧରୁଛି ପଛ ସାରିଛ, ଏବେ ସତରି ସମା ସଫା ଫିଟାଇ ନ କହିଲେ ତମର ଏ ଗର୍ବ ଭାଙ୍ଗିବନି। [illegible] ମଣୋଦାଙ୍କୁ କହନ୍ତି ଛାଡୁନାହିଁ, ଜାଣିଥାଅ ! ବନ୍ଧୁଙ୍କ [illegible] ପୁଚ୍ଛିଥିବାରୁ ତମ ଛଇଟା କୁଆଡେ଼ ମୋଠ ହେବ ପାଇଁଛି ଯିବ ? ନାଁ ? ଆଛା, ଆଛା, ଦେଖିବା ଯେ !

ଶ୍ରୀକୃଷ୍ଣ—ବାଃ ! ମୋ ଅବସ୍ଥା ଦେଖି ତମର ଦୟା ହେଉନାହିଁ ? ତୁମେ ପୁଣି ଏତେବେଳେ ମୋର କୁଶଳ ପ୍ରଶ୍ନ ନ ପଚାରି ଓଲଟି ମୋତେ କଟୁକଥା କହି କଷ୍ଟ ଦେଉଛ !

ମଧୁ—ସଖା ! ତମକୁ କଷ୍ଟ ହେଲାଣି ? ହଉ, ହଉ, ଆମ କଥା ଆମେ ଅଛି। ଘରକୁ ଚାଲ, ସେଇଠି କଥାବାର୍ତ୍ତା ହିବା !

ଶ୍ରୀକୃଷ୍ଣ—ଛି, ସଖା ! ତୁମେ ଏମିତି କଠୋର ହେଲେ ମୋର ଆଉ ଗତି କଅଣ ?

ମଧୁ—କାହିଁକି ? କହୁନାହଁ, ସତଟା ଛୁଏଁ ଛୁଏଁ. ଶ୍ରୀମୁଖରୁ ଫିଟୁ—
ନୋହିଲେ ଜାଣେ ବ୍ରଜ ଯାକ ନାଗରୀ ଭୟାଇ ଦେବ ।
ସଫା ସଫା, ସତ ସତ, ଠିକ୍ ଠିକ୍, କଥାଟି ମାନି ଯାଅ,
କହିଯାଅ, ନୋହିଲେ ଯାହା କହିଲି ସେଇଆ ।

ଶ୍ରୀକୃଷ୍ଣ—ମୁଁ ଆଜ କଅଣ କହିବି ସଖା ? କଅଣ ବା ତୁମେ ଜାଣ ?
ଏ ନାଟର ଗୁରୁ ତ ତୁମେ । ଏଇ ଥରକ କ୍ଷମା ଦିଅ । ଏ
କଥା ଗୋପରେ ଜାଣିଲେ କଅଣ ତମକୁ ବାଧିବ ନାହିଁ
ସଖା ?—

(ଗୀତ)
'ସ'

ସପଡଟି ମୋର ରେ ! ସହ ଏଇଥର ରେ !
ସାର ହୀର ମସାର ମଣି ବର
ଧର ଧର ବକ୍ଷସ୍ଥଳେ ନିରନ୍ତର
ନ ଫିଙ୍ଗ ପୁଣି ହାଣି · ସୁନ୍ଦର ଲୁହଇଟି
ବଗୁର ଭରସା ବଢାଅ ଅପରମିତ । ୦ ।

ଶୁଣିଲେ ଆଜ କେ ବ୍ରଜେ, ସରିଯିବ ଯିନା ଲାଜେ
ସାହା ତୁ ନୋହିଲେ ଜଣ ସଂସାରେ କାହ ମୁଁ ଅଛୁ ।।
ସାଧୁଜନ କୃଷି କୂପେ, ଭଲ ମନ୍ଦ ବିନା ଛପେ
ସଂହର ନୋହି ଜଦୟ, ସହଜେ ତୁ ସହୃଦୟ ।।
ସବୁ ଅନ୍ୟାୟ ଚରଡ, ଶିକ୍ଷାକୁ ଗୁରୁ ତୁହଡ
ସମୟେ ତାକୁ ଢୋଡିକି, ସଖା ଲକ୍ଷଣ ଏ ଟିକି ? ।।



( ଶୀଘ୍ର ସୁବଳ ଓ ସୁଦାମ ଇତ୍ୟାଦ ପ୍ରବେଶ )

ସୁବଳ—ଦେଖ୍, ସଇଳ ସାଗ ଆଜେ ଦେଳେଶ ଉମକୁ ଖୋଜି
ବୁଲୁଛୁ, ମଧୁଆ ବ୍ରାହ୍ମଣ ତମକୁ ଏବେ କଅଣ୍ ମନ୍ତ୍ର କଲାଣି
ହସ ? ତୁମେ ଉମନ୍ ଏଠି ?

ଶ୍ରୀକୃଷ୍ଣ—ସଖା ! ସବାକୁ ବଡ଼ ସୁନ୍ଦର ପବନ ବହୁଛି—ମନହେଲା
କୁଞ୍ଜବନରେ ବୁଲି ଫୁଲ ତୋଳିବାକୁ ।

ମଧୁ—ଶୁଣୁଛ ତ, ଗୋପାଳ ଗର୍ଦ୍ଦଭ ! ଏଇନେ କେମିତି ମୋତେ
ଦୋଷ ଦେଉଥିଲ ?

ସୁବଳ—ଜାଣୁଁ, ଜାଣୁଁ, ସବୁ ନଷ୍ଟ କୁଃ ତମର ବୁଦ୍ଧି ।

ସୁଦାମ—କି ପିଲାବ ସେ କଥାରୁ ଆମର ? ଆସ, ଏକାବେଳେ
ଯମୁନା ଗାଡଧାଇ, ଜାମ ଖାଇ ଘରକୁ ଯିବା । ଗୋଠକୁ
ଯିବାକୁ ବେଳ କଅଣ ଦେଖୁନାହଁ ?

ମଧୁ—ଖାଲି ଗାଧୁଆ ହେଲେ ଆମ କଥା ନପଟେ ।

ସୁବଳ—ଆଜି ଯମୁନାରେ କଣ କରନ୍ତ ?

ମଧୁ—ତା ପଛ କଥାଟା (ହାତରେ ଖାଇବା ଅଭିନୟ କରି)

ସୁଦାମ—ଗୋଟେ ନହାଉ ବ୍ରହ୍ମ ପେଟୁଟିଏ ଏଇଟା—ଶୁଣ, ଆରେ
ସଖା, ଶୁଣ । ଏଇଟାକୁ ସଙ୍ଗରେ କିଏ ?

ମଧୁ—(ଅଭିମାନରେ ଶ୍ରୀକୃଷ୍ଣଙ୍କୁ) ସଖା ! ଶୁଣ, ମେ ତେ କିମିତି
ବ୍ରହ୍ମପେଟୁ କହୁଛ । ତୁମେ ସବୁ ଗୋପଯୁବରାଜ ! ବୁଝ,
ମୋତେ କେମିତି ଏମିତି କହୁଛ ସଖା !

ଶ୍ରୀକୃଷ୍ଣ— (ନୀରବ ହାସ୍ୟ)

ମଧୁ—ହିଁ, ହସିଦେଲ ? ମୋ କଥା ବୁଝିଲ ନାହିଁ ? ବାଇ ଜାଣିଥା
ସଖା, ତୁ, କହୁ ଦେବଟି ?

ଶ୍ରୀକୃଷ୍ଣ—ଛି, ଛି, ସଖା !

ମଧୁ—ନାଇଁ, କହୁଦେବତ । ବୁଝ, ନୋହିଲେ କହୁଦେବ କଟେଣ୍ଟ—

ଶ୍ରୀକୃଷ୍ଣ—ଆଛା, ସେଇଟା ଛାଡ଼ ଭୁଲ୍ ।

ମଧୁ—ଭୁଲ ? ତୁମେ କହୁଲେ କଅଣ ହେବ ? ସେ କହୁ,
ଗୋପାଳ ଗର୍ଦ୍ଦଭ ! ଶଏ ଏକ ବର୍ଷରେ ନାବାଳକ ଭଟେ
ନାଇଁ ଯାହାଙ୍କର, ସେ ପୁଣି କହିବେ ଆମକୁ ଯା ? ନାଇଁ

ତୁମେ କୃଷ୍ଣ ସଖା, ନଇଲେ, ହୁଁ, କହିଦେବଟି! ଯାହା କହୁଥିଲି ମାଆଙ୍କୁ କହିଦେବଟି ।

ଶ୍ରୀକୃଷ୍ଣ—ଅଚ୍ଛା, ତାଙ୍କୁ ଦଣ୍ଡ ଦେବା । ଆଜ୍ଞ ମୋ ଭାଗରୁ ସର, ଲହୁଣି, ଛେନା, ରସାବଳୀ ଆଜ ତାଙ୍କୁ ଦଆ ହେବ ନାହିଁ । ସବୁ ତମର । ଆଜ୍ଞ ତାର ପଡ଼ କାଟ, ଯାଃ, ହେଲା ?

ମଧୁ— ହିଁ, ଖାଉଥା (ହସି) ଖାଉଥାରେ ଗୋପାଳ ମୂର୍ଖ । ପାଇଲା ? ଆସ ତେବେ ସଖା, ରସାବଳୀ ନାଁ ଶୁଣି, ଭାରି ଭୋକ ଦେଖେଇଲାଣି । ମୁଁ ସେତକ, ତମଭାଗ ସହିତେ, ସବୁ ଗୁଣ୍ଡ ଦେଇ ଘରେ ପଠିଏ ନିଶ୍ୱାସ ମାରିବି । ଆଜ ତୁମେ କଅଣ କରିବ କହିବ ? ଏ- ଏକଦମ, ଏ ଗଉଡ଼ ପଲଙ୍କୁ ନେଇ ଯମୁନା କୂଳରେ, ତନଇଙ୍କି ପାଣିରେ, ସେଇଠି, ମନେ ପଡ଼ୁଛି ନା ସଖା ? (ଠାରି) ଏଁ-ବୁଝିଲନାଁ ? ତୁମେ ତମ ବାଟ ଦେଖିବ—ଅମେ ଅମ ବାଟ ଧରିବୁଁ । ଥରେ ସେଠେଇ ତୁମେ, ନଠେଇ କର, ମଠେଇ, ମଠେଇ—

[ଗୀତ]

ଜୟ ରାଧେ ଶ୍ରୀରାଧେ ବୋଲି ବଜାଅ ମୋହନ ବଂଶୀ
ତାନ ପରଶି କାନରେ ଦେଉ ସଖୀ ମନ, ଗତ ଧ୍ୱଂସି । ୦ ।
(ସେଇ) ମୋହନ ମୁରଲୀ ତାନରେ
ଥରେ ସଚଳ ପବନ ଅଚଳ ରହୁ
ଯମୁନା ଲହରୀ ଲହରେ ଲହରେ
ପରଶି ତାନ ନଗୃଉ ଆଉ
କୁଞ୍ଜବନେ କୋଇଲି କୁହୁ ଗାଉ
ଚଟକ ନୟନ ଅଟକ ରହିବ ଲଗିବ ପୀରତି ଫାଶି । ୧ ।



ବିଷ୍ମୂକ

# ୪ର୍ଥ ଅଙ୍କ

## -ପ୍ରଥମ ଦୃଶ୍ୟ-

ଯମୁନା ତଟ

(ଯମୁନାର ଆର ପାଖରେ କଦମ୍ବ ମୂଳେ ତ୍ରିଭଙ୍ଗ ଛନ୍ଦେ ଉଭା ଶ୍ୟାମ, ଏ ପାଖରେ ଶ୍ରୀମତୀ । ଲଳିତା ବିଶାଖା ଇତ୍ୟାଦି ସଖୀଗଣ ଶ୍ରୀମତୀଙ୍କୁ ଶ୍ୟାମ ଶୋଭା ଦେଖାଉଥିଲେ )

ସଖୀଗଣ— (ଷ)

ଷଟ୍‌ପଦ ନୀଳ କେଶା ଆଗୋ ଗୁଞ୍ଜି, ଗୁଞ୍ଜି,
ସଙ୍ଗସନ୍ଧାରେ ଖେଳୁଛନ୍ତି ନାଚ ବାର-ବାନ୍ଧ,
ସମୀପରେ ଧାର ରନ୍ଧ୍ର-
ଦେଖୁଛନ୍ତି ନର୍ତ୍ତକ ଅନେକ ବନସ୍ତ୍ରୀ । ୧ ।

ଦେଖ ଦୋଳି ସ୍ୱର ସରଦାର ଅବା ଆସେ,
ସ୍ୱକୀୟ ପଙ୍କଜ ଧରିଅଛନ୍ତି ଚନ୍ଦ୍ରପାଶେ,
ସାର ଦେବ ଘଗ୍ର ଆଜି
ସଂଗ୍ରାମ ସୁନ୍ଦରନେତ୍ରା ଜନ ମନ ଲାଜ । ୨ ।

ସୁରେଶ୍ୱର ରତନଙ୍କ ଓଢଣାରୁ ଜଙ୍ଗମ,
ସବୁ ମଣିମାନଙ୍କୁ ମିଳାଇ ସେହି କାମ
ସ୍ୱର୍ଣ୍ଣବର୍ଣ୍ଣା ଏ ଏଣିକ
ହର୍ଷାଦରେ ମୂର୍ତ୍ତିମନ୍ତ ରତନ ଶ୍ରେଣୀକି । ୩ ।

ସଞ୍ଚରଣଶୀଳ ନବ ତମାଳ ଭୂରୁହ
ସଙ୍ଗେ ଯେଣି ଆସୁଅଛନ୍ତି ସଖା-ଶାଖିବ୍ୟୂହ
ଶୁକ ଶାରୀ ପରଭୃତ-
ଶାଖାମାନଙ୍କରେ କରୁଅଛନ୍ତି ସଙ୍ଗୀତ । ୪ ।

ଲଳିତା—ସଖିରେ ! ଲୋକେ କହନ୍ତି ସ୍ୱର୍ଣ୍ଣଗଙ୍ଗା ପବିତ୍ର ସ୍ଥାନ, ତାହାର କୂଳରେ ଯେବେ ତପ କରିଥିବା ତେବେ ଏହି ତମାଳ ଗଛରେ, ଏ ବସନ୍ତରେ ସୁଖରେ ବସିବା ।

ବିଶାଖା—ଭାଗ୍ୟବତୀ ସହି! ତମ ଭାଗ୍ୟ ବଳରୁ ଆମେମାନେ ଜାଣି-ପାରୁଁ, ଜାଣିଥାଏ ପାଉଛୁଁ, ନୋହିଲେ ଏ ଶୋଭା ଦେଖନ୍ତୁ କେଉଁଠି ? ଅନା, ଅନା ସଖି ! କାହାର ଏ ମନମୋହନ ରୂପଟି, ତ୍ରିଭୁବନ ମୋହନ କରି, ତ୍ରିଭଙ୍ଗିଆ ଠାଣିରେ କଦମ୍ବ ମୂଳେ ଉଭା !

ସଖୀଗଣ— (ଗୀତ)

'ହି'

କେତେକ ସଖୀ—ହରି ଅମ୍ବର ଗୋ ଏ ତ ପ୍ରାଣଧନ । ୦ ।

ହରିହସ୍ତ ମଣିକି ଛଣିକି ଅପଘନ
ନିନ୍ଦୁଅଛି ଇନ୍ଦୁକୁ ବଦନ ଗୋ ॥

ଅନ୍ୟସଖୀ— ହଜାର ସଂଖ୍ୟକ ହେଲେ ହେଲେହେଁ ମଦନ
ନୋହିବ ଏ ମୋହନ ସମାନ ଗୋ ॥

କେତେକ ସଖୀ—ହିଙ୍କି ନପିବ ଜୀମୂତ କେଶାର କି ଜ୍ଞାନ
ଶୁଣୁ ଶୁଣୁ ମୃଦୁ ବେଣୁ ଗାନ ଗୋ ॥

ଅନ୍ୟସଖୀ— ହିଟି ଅଟେ କରିବା କି ରଦାମ୍ବୁ ପାନ
ହେଉ ଫଳବନ୍ତ ଯଉବନ ଗୋ ॥

କେତେକ ସଖୀ—ହାର ମଧ୍ୟରେ ଅମ୍ବର ତରଳ ରତନ
ହେବେ କି ଏ ଯୁବତୀ ଜୀବନ ଗୋ ॥

---

ଶ୍ରୀମତୀ—ସଖୀରେ ! କାହାଣ ଦେଖିଲ ଏ ଶିରୋମଣିର ସହି ନ୍ଦେହ ଜାଣୁନାହିଁ । ଆସ ସଖି ! ଏ ନଟବରଙ୍କର ଗୁଣ ଗାନ କରି ଅର୍ଘ୍ୟ ବଢ଼ାଇବା —

ସଖୀଗଣ—(ଅର୍ଘ୍ୟ ବଢାଇ) ଗୀତ

'ଛ'

କ୍ଷମାନୁକମ୍ପାଧର ହେ !

କ୍ଷୀରସାଗରସମ୍ଭବାକୁଚକୁମ୍ଭଯୁଗଳ ପରରମ୍ଭ ଚତୁର ହେ । ୦ ।

କ୍ଷିତଚନ୍ଦବାଳ ମହାଗ୍ରାନ୍ତ ନିବାରଣ ହେ

ଶ୍ରୁତଶିର-ଅବତଂସାକୃତ ଶ୍ରୀଚରଣ ହେ

ମଙ୍ଗଳ ବନ୍ଦରଣ,-କରୁଣିତ ଚରଣ,-ଧରାଭର ହରଣ, ଜଗତର ଶରଣ

ଜଗବର କରଣ,-ନରବର ଚରଣ,-ନଖାଂଶୁ ସୁରଗଣଶିଖାଭରଣହେ



ସମସ୍ତେ— ଗୀତ

ଭଜମନ ରାଧେ କୃଷ୍ଣ ରାଧ କୃଷ୍ଣ ବୋଲ

ବ୍ରଜକୁ ପଳା ଯା ଏ ଜଞ୍ଜାଳରୁ ହୁଗୁଳ (ମନ) । ୦ ।

କାହାର ତୁ କେ ତୋହର ତୁଅନା ବାଉଳ

ମିଳିବଟି ପ୍ରେମଧନ ପ୍ରାଣକୁ ସଂଖାଳ । ୧ ।

ଗୋବର୍ଦ୍ଧନ ପର୍ଦ୍ଦକ୍ଷିଣା କର ମାର ଡାଳ

ଲେଟିହୁଅ କୋଟିବାର ବ୍ରଜସ୍ଥଳୀ ଧୂଳ । ୨ ।

ଶ୍ରୀନାମ ସୁଧାରେ ଚନସାର ଶଙ୍କା ଗୋଳ

ଆନନ୍ଦର ନାଚ ମଥା ପରେ କର ତୋଳ । ୩ ।



(ଶ୍ରୀମତୀ ଅର୍ଘ୍ୟ ବଢାଉ ଥିଲେ, ସଖୀମାନେ ସଖାମାନଙ୍କ ସହିତ ଶ୍ରୀରାଧା ଗୋବିନ୍ଦ ନାମ କୀର୍ତ୍ତନ କରୁଥିଲେ ।)

-ଯବନିକା-

କଟକ କାଳୀପ୍ରେସରେ, ଶ୍ରୀଦୁର୍ଗଚରଣ ସିଂହଙ୍କ ଦ୍ୱାରା ମୁଦ୍ରିତ । ୧୯୫୦